ଗ୍ରନ୍ଥମାଳା

ଚତୁର୍ବିଂଶ

ପ୍ରାଚୀ

# ରୁକ୍ମିଣୀ ବିଭା

କାର୍ତ୍ତିକ ଦାସ

ପ୍ରାଚୀ ଗ୍ରନ୍ଥମାଳା—ଚତୁର୍ବିଂଶ

ପ୍ରଧାନ ସଂପାଦକ—ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍.ଏ.

# ରୁକ୍ମିଣୀ ବଢ଼ା

(କାର୍ତ୍ତିକ ଦାସ)

# ରୁକ୍ମିଣୀ ବିଭା

## କାର୍ତ୍ତିକ ଦାସଙ୍କ କୃତ

ଟୀକା ଓ ମୁଖବନ୍ଧ ସହ

**ପ୍ରାଚୀ ସମିତି ଦ୍ୱାରା**

ସଂକଳିତ ଓ ପ୍ରକାଶିତ

ମୂଲ୍ୟ ଅଠଅଣା ମାତ୍ର

# ମୁଖବନ୍ଧ

କୋଣାର୍କର କଳାପରିପାଟୀରେ ଯେପରି ଶିଳ୍ପନୈପୁଣ୍ୟର ଶେଷପରିକାଷ୍ଠା ପ୍ରଦର୍ଶିତ, ମଧ୍ୟଯୁଗର ଉତ୍କଳ ସାହିତ୍ୟରେ ସେହି-ପରି ପାଣ୍ଡିତ୍ୟ ଓ ଚାତୁର୍ଯ୍ୟର ଚରମ ବିକାଶ ପରିଦୃଷ୍ଟ ହୁଏ । ପ୍ରାଣ-ହୀନ ପାଷାଣଗାତ୍ରରେ କଳା-କମନୀୟତା ଫୁଟାଇବା ଯେପରି ଦିନ ଅଧିକର କାର୍ଯ୍ୟ ନୁହେଁ—ପରନ୍ତୁ ବଂଶପରଂପରାଗତ କ୍ରମିକ ସାଧନାର ଭୂମ୍ୟୋବିକାଶ ଅଟେ, ସେହିପରି ମଧ୍ୟଯୁଗର ସାହିତ୍ୟ-କଳାରେ ଛନ୍ଦାନୁରୂପ ଚାତୁରୀ ଓ ବୈଚିତ୍ର୍ୟର ଆତ୍ମପ୍ରକାଶ ଦିନ ଅଧିକର କଥା ନୁହେଁ । ସୁଦୂର ଅତୀତ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଆମ୍ଭେମାନେ ଦେଖି ପାରିବା ଯେ, ତାହା ପିତୃପିତାମହକ୍ରମେ ପରିଚାଳିତ ସାହିତ୍ୟିକ ପ୍ରଚେଷ୍ଟାର ପୂର୍ଣ୍ଣ ବିକାଶ ଏବଂ ଜାତୀୟ ଚିନ୍ତାର ପରିଣତ ତଥା ପ୍ରଶସ୍ତ ଅଭିବ୍ୟକ୍ତି । ଅତୀତର ଅଭେଦ୍ୟ ଅନ୍ଧକାର ମଧ୍ୟରେ ରହସ୍ୟମଞ୍ଜୁଷା ବା ଉଷାଭିଳାଷ ସଦୃଶ ଯେ କେତେ ଅମୂଲ୍ୟ ସାହିତ୍ୟରତ୍ନ ଇତସ୍ତତଃ ନିକ୍ଷିପ୍ତ, ତାହାର ଇୟତ୍ତା କରି ହେବ ନାହିଁ । ସେହି ଲୁପ୍ତପ୍ରାୟ ରତ୍ନରାଜିର ଅନୁସନ୍ଧାନ କଲେ ଆମ୍ଭେମାନେ ଦେଖିବା ଯେ, ସେ ସମସ୍ତ ମଧ୍ୟଯୁଗର ସାହିତ୍ୟଠାରୁ ଯଥେଷ୍ଟ ସରଳ ଓ ସହଜ । ଜାତୀୟ ଚିନ୍ତାର ଅକପଟ ଅଭିବ୍ୟକ୍ତିରେହିଁ ଯେ ସକଳର ଜୀବନ ଗଠିତ, ତେଣୁ ସର୍ବସାଧାରଣଙ୍କର ସହଜ-ବୋଧ । ବର୍ତ୍ତମାନ ଆମ୍ଭମାନଙ୍କର ଆଲୋଚ୍ୟ କବି କାର୍ତ୍ତିକ ଦାସଙ୍କ ବିରଚିତ 'ରୁକ୍ମିଣୀ ବିଭା' କାବ୍ୟଟି ଏହି ଉକ୍ତିର ଏକ ସୁନ୍ଦର ନିଦର୍ଶନ । କାବ୍ୟଟି ଆମୂଳଚୂଳ ପାଠ କଲେ ସ୍ପଷ୍ଟ ଜଣାଯାଏ ଯେ, ଭାଷାର ସରଳତା ଓ ବର୍ଣ୍ଣନାର

ବାସ୍ତବକତା ଭିତରେ କବିତ୍ୱର ହିଁ ଏକ ଅପୂର୍ବ ମାଧୁର୍ଯ୍ୟ ଅନ୍ତଃସଲିଳା ଫଲ୍ଗୁ ପରି ଅତୀତର ସେହି ସରଳ ନିର୍ମଳ ଜାତୀୟ ଚିନ୍ତାର କଳଗୀତ ଗାଇ ଗାଇ ସତେ ଯେପରି ହିଁ ଏକ ଅଜ୍ଞାତ ଅପରିଚିତ ମହାସିନ୍ଧୁର ଅଭିମୁଖରେ ପ୍ରବାହିତ ହେଉଅଛି ।

ପ୍ରକୃତିର ପ୍ରିୟବିହାରସ୍ଥଳୀ ପୁଣ୍ୟଭୂମି ଉତ୍କଳର କେଉଁ କୋଣରେ କବି କାର୍ତ୍ତିକଙ୍କର ଆବିର୍ଭାବ ହୋଇଥିଲା, ତାହା ଯଥାଯଥ ଭାବରେ ଅବଗତ ହେବାର ବର୍ତ୍ତମାନ ସେପରି କୌଣସି ଉପାୟ ନାହିଁ । କେବଳ ଯେ ଏହି ଖଣ୍ଡିଏ ମାତ୍ର କାବ୍ୟରେ ତାଙ୍କ କବିତ୍ୱର ପର୍ଯ୍ୟବସାନ ହୋଇଥିଲା, ଏପରି କୌଣସି ଅବଧାରଣରେ ଉପନୀତ ହେବା ମଧ୍ୟ ଆମ୍ଭମାନଙ୍କ ମତରେ ନିରାପଦ ନୁହେଁ । ହୁଏ ତ ଉତ୍କଳର ଅନ୍ୟ କେଉଁ ଅଞ୍ଚଳରୁ ନିୟତିର ମଙ୍ଗଳ ନିଦେଶରେ ତାଙ୍କର ଅନ୍ୟ କୌଣସି କୃତିର ସନ୍ଧାନ ମିଳିପାରେ ଏବଂ ସେହି ଅପ୍ରକାଶିତ ତଥା ଅଜ୍ଞାତ ଗ୍ରନ୍ଥରେ ସେ ହୁଏ ତ ତାଙ୍କର ଜନ୍ମ ଓ ବାସସ୍ଥାନ ନିର୍ଦ୍ଦେଶ କରି ପାରିଥାନ୍ତି । ଭାଷାଗତ ବିଶିଷ୍ଟତାର ବିଚାର କରି ତାହାଙ୍କର ବାସସ୍ଥାନକୁ ଉତ୍କଳର କୌଣସି ଏକ ବିଶିଷ୍ଟ ଅଞ୍ଚଳରେ ଆବଦ୍ଧ କରି ରଖିବା ମଧ୍ୟ ଆଦୌ ସମୀଚୀନ ନୁହେଁ । ବିଂଶ ଶତାବ୍ଦୀର ଏହି ବୈଜ୍ଞାନିକ ଯୁଗରେ ଏପରି ଅନେକ ସାହିତ୍ୟିକ ଥାଇ ପାରନ୍ତି, ଯେଉଁମାନେ ବିଜ୍ଞାନର ଦୁହାଇ ଦେଇ ନାନା ଅସାର ପ୍ରମାଣମାନ ଉପସ୍ଥାପିତ କରି କବିଙ୍କର ଜାତି, କୁଳଗୋତ୍ର ଓ ବାସସ୍ଥାନ ନିରୂପଣରେ ଆଶାତିରିକ୍ତ ସାହସିକତା ଦେଖାଇବାକୁ ଗୌରବର ବିଷୟ ବୋଲି ମନେ କରିଥାନ୍ତି । କିନ୍ତୁ ଆମ୍ଭେମାନେ ସେ ଧରଣର ଅବଧାରଣରେ ଉପନୀତ ହେବାକୁ ନିତାନ୍ତ ଅପାରଗ । କାବ୍ୟଟିର ଆମୂଳଚୂଳ ଆଲୋଚନା କରି—

ବାହ୍ୟ ଓ ଅଭ୍ୟନ୍ତରୀଣ ପ୍ରମାଣାବଳି ବଳରେ ଯଥାଶକ୍ତି ସତ୍ୟମୂଳକ ସିଦ୍ଧାନ୍ତମାନ ଆମ୍ଭେମାନେ ଏଠାରେ ଉପସ୍ଥାପିତ କରିବୁଁ ।

'ରୁକ୍ମଣୀ ବିଭା' ର ଭାଷା ଦିଗରୁ ଆଲୋଚନା କଲେ ସ୍ପଷ୍ଟ ଅନୁମିତ ହୁଏ ଯେ, ତାହା ଭଞ୍ଜଯୁଗର ପୂର୍ବତନ । କାରଣ ସେ ସକଳ ଶବ୍ଦାବଳୀର ପ୍ରୟୋଗ ଉପେନ୍ଦ୍ର, ଦୀନକୃଷ୍ଣ ପ୍ରଭୃତି ମଧ୍ୟଯୁଗର କବିମାନଙ୍କ କୃତିରେ ଆଦୌ ପରିଦୃଷ୍ଟ ହୁଏ ନାହିଁ । ନିମ୍ନରେ ସେହିପରି କେତୋଟି ଶବ୍ଦ ରୁକ୍ମଣୀ ବିଭାରୁ ଉଦ୍ଧୃତ କରାଯାଉଅଛି । ଯଥା:— ପଶ୍ଚତ, ତର୍ପଣ, ସୀତଯ୍ୟ, ବ୍ରାହ୍ମଣନ୍ତ, ଅଷ୍ଟମଙ୍ଗଳନ୍ତ, କହୁଦନ, ବନ୍ଧୁମାନନ୍ତ, ଯିସ ଯିସ, ଗାବନ୍ତ, ଶୁଣିତେ, ହେବନ, ଜଗୁଜନ, କୃତ୍ତତହିଁ, ଦେବତାଇ, ବହା, ନିତ୍ୟକର୍ମନ୍ତ, ଭୟେ'ଛି, ହାଦେ, ପଥରାଇଣ, ଛଛନ୍ଦ, ଅମନାତ୍ୟ, ଲୋକନ୍ତ, ସଙ୍ଗାତ, ଆପ୍ତୀ, ନଉସ୍ଥଳନ୍ତ, ଆୟେ, ନଠୀକାଲ, ଓ ଅମଲାଣ ପ୍ରଭୃତି । ଉଲ୍ଲିଖିତ ଶବ୍ଦ ଓ ଶବ୍ଦାଂଶମାନ ଭାଷାର ପ୍ରାଚୀନତ୍ୱର ପରିଚୟ ପ୍ରଦାନ କରେ ଏବଂ ସେହି ସୂତ୍ରରେ କାବ୍ୟଟିର ପ୍ରାଚୀନତା ମଧ୍ୟ ପ୍ରତିପାଦିତ ହୁଏ ।

ଏତଦ୍‌ବ୍ୟତୀତ ଯେଉଁ ଛନ୍ଦ ଓ ବାଣୀର ନିଗଡ଼ରେ କବି କାବ୍ୟର ପ୍ରତିପାଦିତ ବିଷୟକୁ ଶୃଙ୍ଖଳିତ କରିଅଛନ୍ତି, ତାହାର ଆଲୋଚନା କଲେ ଜଣାଯାଏ ଯେ, କାବ୍ୟଟି ଭଞ୍ଜଯୁଗର ପୂର୍ବବର୍ତ୍ତୀ । ପ୍ରକୃତରେ ରୁକ୍ମଣୀ ବିଭାରେ ନିର୍ଦ୍ଦେଶିତ ରାଗ ରାଗିଣୀ ଓ ବାଣୀମାନ ପୂର୍ବଭଞ୍ଜଯୁଗର କବି ଶିଶୁଶଙ୍କର, ଦେବଦୁର୍ଲ୍ଲଭ ଏବଂ ନରସିଂହ ପ୍ରଭୃତିଙ୍କ କୃତିରେ ବ୍ୟବହୃତ ହୋଇଥିବାର ଦେଖାଯାଏ । ପୁନଶ୍ଚ କାବ୍ୟଟିର ଅଷ୍ଟମ ଓ ନବମ ଛାନ୍ଦରେ କବି କାର୍ତ୍ତିକ ଯଥାକ୍ରମେ ଅର୍ଜ୍ଜୁନ ଦାସଙ୍କ ରାମବିଭା କାବ୍ୟର 'ମାଳକଣ୍ଠରଷି କହେ' ବାଣୀ ଓ ଶିଶୁଶଙ୍କରଙ୍କ ଉଷା ଦ୍ୱିତୀୟ ଛାନ୍ଦ ବାଣୀ ନିର୍ଦ୍ଦେଶ କରିଅଛନ୍ତି ।

ଅର୍ଜୁନ ଦାସଙ୍କଠାରୁ ଉଷାଭିଳାଷର କବି ଅର୍ବାଚୀନ ଏବଂ ଉଷାଭିଳାଷର ମୁଖବନ୍ଧରେ ଏହା ପ୍ରମାଣିତ ହୋଇଅଛି ଯେ, ସେ ୧୫୫୫ ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର ମଧ୍ୟଯୁଗର କବି । ଉଷାଭିଳାଷର ଦ୍ୱିତୀୟ ଛାନ୍ଦ ବାଣୀରେ କବି କାର୍ତ୍ତିକ ସ୍ୱୀୟ କାବ୍ୟର ନବମ ଛାନ୍ଦ ରଚନା କରିଥିବାରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ରୁକ୍ମଣୀ ବିଭାର ପ୍ରଣୟନ କାଳରେ ଉଷାଭିଳାଷ ଦେଶର ପୁରପଲ୍ଲୀ ସର୍ବତ୍ର ସୁପ୍ରଚୁର ରୂପେ ପ୍ରଚାରିତ ହୋଇ ସାରିଥିଲା । ଏହି ପ୍ରଚାର କାଳକୁ ୫୦ଠାରୁ ୧୦୦ ବର୍ଷ ପର୍ଯ୍ୟନ୍ତ ଧରିନେଲେ ରୁକ୍ମଣୀ ବିଭା ୧୬୦୦ ଠାରୁ ୧୬୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ହୋଇଥିବାର ସ୍ପଷ୍ଟ ଅନୁମିତ ହୁଏ ।

ଗୋବିନ୍ଦଗୀତା ଗ୍ରନ୍ଥର ଆଲୋଚନା କଲେ ଜଣାଯାଏ ଯେ, ତତ୍ପ୍ରଣେତା ଦ୍ୱାରକା ଦାସ ଦୁଇଗୋଟି ଛାନ୍ଦରେ ରୁକ୍ମଣୀ ବିଭା ବାଣୀ ନିର୍ଦ୍ଦେଶ କରିଅଛନ୍ତି । ସେ ଛାନ୍ଦ ଦୁଇଟି ଅର୍ଥାତ୍ ଗୋବିନ୍ଦଗୀତାର ଦ୍ୱିତୀୟ ଓ ନବମଛାନ୍ଦ ରୁକ୍ମଣୀବିଭାର ପ୍ରଥମଛାନ୍ଦ ସଙ୍ଗେ ଯଥେଷ୍ଟ ସାମଞ୍ଜସ୍ୟ ରକ୍ଷା କରିଥିବାର ଦେଖାଯାଏ । ତେବେ ପାର୍ଥକ୍ୟ ମଧ୍ୟରେ ଏତିକି ଯେ, ଦ୍ୱାରକା ଦାସ ୨୯ ଅକ୍ଷର ବିଶିଷ୍ଟ ଛାନ୍ଦରେ ଅଷ୍ଟମ, ଷୋଡ଼ଶ ଓ ଊନତ୍ରିଂଶ ଅକ୍ଷରଠାରେ ଯତି ରଖି ଗୋବିନ୍ଦଗୀତାର ଦ୍ୱିତୀୟ ଓ ନବମଛାନ୍ଦ ଲେଖି ଅଛନ୍ତି । କିନ୍ତୁ କବି କାର୍ତ୍ତିକ ରୁକ୍ମଣୀ ବିଭାର ପ୍ରଥମ ଛାନ୍ଦଟିକୁ ୨୭ ଅକ୍ଷର ବିଶିଷ୍ଟ ଛାନ୍ଦରେ ଅଷ୍ଟମ, ଷୋଡ଼ଶ ଓ ସପ୍ତବିଂଶ ଅକ୍ଷରଠାରେ ଯତି ରଖି ଲେଖି ଅଛନ୍ତି । ଏହି ସାମାନ୍ୟ ପାର୍ଥକ୍ୟର ଏକମାତ୍ର କାରଣ ଏହି ଯେ, ଓଡ଼ିଆ ରାଗ ରାଗିଣୀମାନ ସଂସ୍କୃତ ମାତ୍ରାମିତ ବୃତ୍ତର ଅନୁକରଣରେ ପ୍ରସାର ଓ ପୁଷ୍ଟି ଲାଭ କରିଅଛି ଏବଂ ମାତ୍ରାର ହ୍ରାସ ବୃଦ୍ଧି ନିୟମରେ

ଏକରୁ ବହୁରୂପ ଧାରଣ କରିଅଛି । ଯେଉଁମାନେ ସ୍ୱରଶିଳ୍ପର ଆଲୋଚନା କରିଅଛନ୍ତି, ସେମାନେ ଆମ୍ଭମାନଙ୍କ ସଙ୍ଗେ ଏ ବିଷୟରେ ଏକମତ ହେବେ—ଏଥିରେ କୌଣସି ସନ୍ଦେହ ନାହିଁ । ସେ ଯାହା ହେଉ, ରୁକ୍ମିଣୀ ବିଭାର ପ୍ରଥମ ଛାନ୍ଦଟି ୧୭ ଅକ୍ଷର ବିଶିଷ୍ଟ ବିଭାସଗୁଜ୍ଜରୀ ରାଗରେ ଲିଖିତ । ଦ୍ୱାରକାଦାସ ସେହି ରାଗକୁ ନିଜ ଗାଇବା ଭଙ୍ଗୀର ବିଭିନ୍ନତା ହେତୁ ହେଉ ବା ସେହିପରି ଅନ୍ୟ କୌଣସି ଅନିବାର୍ଯ୍ୟ କାରଣ ବଶତଃ ହେଉ, ୧୯ ଅକ୍ଷରବିଶିଷ୍ଟ କରିଅଛନ୍ତି ଏବଂ ପାଠକମାନଙ୍କର ଭ୍ରମାପନୋଦନ ନିମିତ୍ତ ରୁକ୍ମିଣୀ ବିଭାର ବାଣୀ ନିର୍ଦ୍ଦେଶ କରି ଦେଇ ନିଜର ଦୋଷ ସ୍ଖଳନ କରିଅଛନ୍ତି । ଅନ୍ୟ ଦିଗରୁ ବିଚାର କଲେ ଜଣାଯାଏ ଯେ, ଯେ ଉଚ୍ଚଧରଣର ଗାୟକ, ଓଡ଼ିଆ ରାଗରାଗିଣୀର ଗଠନପ୍ରଣାଳୀ ଏବଂ ଗାନକୌଶଳରେ ଯେ ଧୁରନ୍ଧର, ତାହା ନିକଟରେ ସାମାନ୍ୟ ଦୁଇ ଏକ ଅକ୍ଷର ବା ମାତ୍ରାର ହ୍ରାସ ବୃଦ୍ଧିରେ ବିଶେଷ କୌଣସି ଦୋଷାଦୋଷ ସମ୍ଭବପର ହୁଏ ନାହିଁ । ବୋଧହୁଏ ଏହି ଦୃଷ୍ଟିରେ କବି ଦ୍ୱାରକାଦାସ ସପ୍ତବିଂଶତ ଅକ୍ଷର ବିଶିଷ୍ଟ ବିଭାସଗୁଜ୍ଜରୀ ରାଗକୁ ଟିକିଏ ଇତର ବିଶେଷ କରି ଊନବିଂଶତ୍ ଅକ୍ଷରବିଶିଷ୍ଟ କରିଅଛନ୍ତି । କିନ୍ତୁ ପରବର୍ତ୍ତୀ କାଳର ଲେଖକଗଣ ଦ୍ୱାରକାଦାସ ପ୍ରବର୍ତ୍ତିତ ଏହି ଊନବିଂଶତ୍ ଅକ୍ଷର ବିଶିଷ୍ଟ ବିଭାସଗୁଜ୍ଜରୀକୁ ପ୍ରାମାଣିକ ରୂପେ ଗ୍ରହଣ କରି ତଦନୁଯାୟୀ ଛାନ୍ଦ ଲେଖିଥିବାର କୌଣସିଠାରେ ଦେଖାଯାଏ ନାହିଁ, ପରନ୍ତୁ ସେହି ସପ୍ତବିଂଶ ଅକ୍ଷର ବିଶିଷ୍ଟ ବିଭାସଗୁଜ୍ଜରୀ ଗୃହୀତ ହୋଇଥିବାର ଦୃଷ୍ଟାନ୍ତ ଭୂରି ଭୂରି ମିଳେ । ସେ ଯାହାହେଉ, ଏ କଥା ସ୍ଥିର ନିଶ୍ଚୟ ଯେ, ଦ୍ୱାରକାଦାସ କବି କାର୍ତ୍ତିକଙ୍କ ରୁକ୍ମିଣୀ ବିଭା ପ୍ରଥମଛାନ୍ଦ ପ୍ରଦର୍ଶିତ ଛାନ୍ଦକୁ ଟିକିଏ ମାର୍ଜିତ କରି ଏବଂ ସେହି ଗ୍ରନ୍ଥର

କାଣୀ ଉଲ୍ଲେଖ କର ସ୍ୱୀୟ ଗୋବନ୍ଦଗୀତାର ଦ୍ୱିତୀୟ ଓ ନବମସ୍ତବକ ଲେଖି ଅଛନ୍ତି । ବର୍ତ୍ତମାନ ଅନ୍ବେଷଣରେ ଅବଧାରତ ହୋଇପାରେ ଯେ, ଗୋବନ୍ଦଗୀତାର ପ୍ରଣୟନ ପୂର୍ବରୁ ରୁକ୍ମଣୀ-ବଭା ପ୍ରଣୀତ ହୋଇଥିଲା ଏବଂ ଦ୍ୱାରକାଦାସଙ୍କ କବିତ୍ୱ ଫୁଟି ଉଠିବା ବେଳକୁ ତାହା ଦେଶର ସର୍ବତ୍ର ପ୍ରଚାରତ ହୋଇ ପ୍ରସିଦ୍ଧି ଅର୍ଜନ କର ସାରଥିଲା ।

ପରଦେଶୀଗୀତାର ମୁଖବନ୍ଧରେ ପ୍ରମାଣିତ ହୋଇଅଛି ଯେ, କବ ଦ୍ୱାରକାଦାସ ୧୬୬୬ରେ ଜନ୍ମଗ୍ରହଣ କର ୮୦ ବର୍ଷ ପର୍ଯ୍ୟନ୍ତ ଜୀବତ ଥିଲେ । ରୁକ୍ମଣୀ ବଭାର ପୂର୍ବ ଅବଧାରତ ରଚନା କାଳ ୧୬୦୦ କମ୍ବା ୧୬୫୦ରେ ତାହାର ପ୍ରଚାର ଓ ପ୍ରସିଦ୍ଧି ଅର୍ଜନ ପାଇଁ ୫୦ ବ ୧୦୦ ବର୍ଷ ଧର ନେଇ ଯୋଗକଲେ ସ୍ପଷ୍ଟ ଜଣାଯାଏ ଯେ, ୧୬୫୦ କମ୍ବା ୧୭୦୦ ଖ୍ରୀଷ୍ଟାବ୍ଦ ବେଳକୁ କାବ୍ୟଟି ଦେଶର ପ୍ରତି ପୁର ପଲ୍ଲୀରେ ପ୍ରଚାରତ ହୋଇ ସାରଥିବ ଏବଂ ସେହି କାଳରେ କମ୍ବା ତତ୍ସମୀପବର୍ତ୍ତୀ କାଳରେ ଗୋବନ୍ଦଗୀତା ରଚତ ହୋଇଥିବ । ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ, ରୁକ୍ମଣୀବଭାର କବ କାର୍ତ୍ତିକ ଉପେନ୍ଦ୍ରଭଞ୍ଜଙ୍କ ପୂର୍ବବର୍ତ୍ତୀ ଏବଂ ତାହାଙ୍କର ଆବର୍ଭାବ ୧୬୦୦ ଠାରୁ ୧୬୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ନଃସନ୍ଦେହରେ ନର୍ଣ୍ଣୀତ ହୋଇପାରେ ।

କବ କର୍ତ୍ତିକାଦାସ ତଦୀୟ ରୁକ୍ମଣୀ ବଭା କାବ୍ୟର ଅନେକଣ୍ଠ ମୁକ୍ତକଣ୍ଠରେ ସ୍ୱୀକାର କରଅଛନ୍ତି ଯେ, ସେ ପଦ୍ମପୁରାଣରୁ କାବ୍ୟଟିର ଅସ୍ଥିକଙ୍କାଳ ସଂଗ୍ରହ କରଅଛନ୍ତି । ତନ୍ମୂଳ ମୂଳ ପଦ୍ମପୁରାଣ-ସ୍ଥିତ ଉତ୍ତର-ଖଣ୍ଡର ୨୪୬ ଓ ୨୪୭ ଅଧ୍ୟାୟରେ ରୁକ୍ମଣୀ-ପରିଣୟ ବୃତ୍ତାନ୍ତ ଅତ ସଂକ୍ଷିପ୍ତଭାବରେ ବର୍ଣ୍ଣିତ ହୋଇଥିବାର ଦେଖାଯାଏ । କବ କାର୍ତ୍ତିକ ଯେ ସକଳ ସ୍ଥାନରେ ମୂଳ ବର୍ଣ୍ଣନାକୁ ଅକ୍ଷୁଣ୍ଣ ରଖି ଅଛନ୍ତି, ତାହା

ମଧ୍ୟ ନୁହେଁ । ସେଥିରେ ପୁଣି ଅନ୍ୟାନ୍ୟ ପୁରାଣ ଇତିହାସ-ବର୍ଣ୍ଣିତ ସେହି ବୃତ୍ତାନ୍ତର ପ୍ରଭାବ ଯେ ତାହାଙ୍କୁ ଇତର ବିଶେଷ ଭାବରେ ପ୍ରଭାବିତ କରି ନ ଥିବ ତାହା ମଧ୍ୟ କୁହାଯାଇ ନ ପାରେ । ପଦ୍ମ-ପୁରାଣ ବ୍ୟତୀତ ଅନ୍ୟ କେତେକ ପୁରାଣରେ ବିଶେଷତଃ ଶ୍ରୀମଦ୍ ଭାଗବତରେ ଏହି ରୁକ୍ମିଣୀ-ପରିଣୟ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ଆମ୍ଭମାନଙ୍କ ପରବର୍ତ୍ତୀ ଆଲୋଚନାରେ ପାଠକଗଣ ଦେଖି ପାରିବେ ଯେ, ରୁକ୍ମିଣୀ ବିଭା କାବ୍ୟରେ ପଦ୍ମପୁରାଣଠାରୁ ଭାଗବତର ପ୍ରଭାବ ଅଧିକତର ମାତ୍ରାରେ ପତିତ ହୋଇଅଛି ।

ରୁକ୍ମିଣୀଙ୍କ ସ୍ୱୟଂବର ସଭା ବର୍ଣ୍ଣନାରେ ପଦ୍ମପୁରାଣ ଓ ଭାଗବତ ପୂର୍ଣ୍ଣ ନୀରବତା ଅବଲମ୍ବନ କରିଥିଲେହେଁ ଅଚ୍ୟୁତାନନ୍ଦ ଦାସଙ୍କ ସାତ-ଖଣ୍ଡିଆ ହରିବଂଶରେ ତାର ସୁବିସ୍ତୃତ ବର୍ଣ୍ଣନା ଦେଖାଯାଏ । ଗରୁଡ଼ ପକ୍ଷ ବାତରେ ସ୍ୱୟମ୍ବର ସଭାର ଶ୍ରୀବିନାଶ ଏବଂ ଅଭିମାନୀ ନରପତି ମାନଙ୍କର ପରାଭବ ପ୍ରଭୃତି ବର୍ଣ୍ଣନା ପ୍ରସଙ୍ଗରେ ସଂସ୍କୃତ ହରିବଂଶର ସମ୍ପୂର୍ଣ୍ଣ ଉଦାସୀନତା ଦେଖି ମନେ ହୁଏ ଯେ, ସେ ସକଳ ବର୍ଣ୍ଣନା ଅଚ୍ୟୁତାନନ୍ଦଙ୍କ କଳ୍ପନାପ୍ରସୂତ । କବି କାର୍ତ୍ତିକ ଏହି ସ୍ୱୟମ୍ବର ସଭା ପ୍ରସଙ୍ଗରେ ଅଚ୍ୟୁତାନନ୍ଦଙ୍କ ପଦାଙ୍କ ଅନୁସରଣ କରି ନିଜର ମୌଳିକତା ସହଯୋଗେ ତାହାକୁ ଏକ ଅଭିନବ ଆକାର ପ୍ରଦାନ କରିଅଛନ୍ତି ।

କାବ୍ୟଦିଗରୁ ରୁକ୍ମିଣୀ ବିଭାର ଆଲୋଚନା କଲେ କବି କାର୍ତ୍ତିକଙ୍କର କବିତ୍ୱ ତଥା ବର୍ଣ୍ଣନାପାଟବ ଓ କଳ୍ପନା-ଚମତ୍-କାରିତା ସହଜରେ ଧରାପଡ଼େ । କାବ୍ୟର ପ୍ରାରମ୍ଭ ଭାଗରେ ସେ ପ୍ରଥମତଃ ନୀଳାଚଳନାଥ ଜଗନ୍ନାଥଙ୍କର ବନ୍ଦନା, ରୂପ ବର୍ଣ୍ଣନା ଏବଂ କାବ୍ୟ ରଚନା ନିମିତ୍ତ ତାଙ୍କର ଶ୍ରୀଚରଣରେ କୃପାକଣିକା

ପ୍ରାର୍ଥନା କରିଅଛନ୍ତି । କାବ୍ୟର ବସ୍ତୁ ନିରୂପଣରେ ସେ ସାଧୁ ଓ ଖଳ ସମାଲୋଚକମାନଙ୍କ ଉଦ୍ଦେଶ୍ୟରେ ନିଜର ବକ୍ତବ୍ୟ ପ୍ରକାଶ କରି ଶେଷରେ ଉପଜୀବ୍ୟ ବିଷୟର ଅବତାରଣା କରିଅଛନ୍ତି । ରୁକ୍ମିଣୀ ଏହି କାବ୍ୟର ନାୟିକା ଏବଂ କୃଷ୍ଣଚନ୍ଦ୍ର ନାୟକ । ରୁକ୍ମି ସ୍ୱଭଗିନୀ ରୁକ୍ମିଣୀଙ୍କୁ ଶିଶୁପାଳ ସଙ୍ଗେ ବିବାହିତା କରାଇବାର ସମ୍ବାଦ ପାଇ ଗୋପୀମୋହନ କୃଷ୍ଣ କିପରି ତାହାଙ୍କର ମନୋବାଞ୍ଛା ପୂରଣ କରି-ଥିଲେ, ତାହାର କବିତ୍ୱପୂର୍ଣ୍ଣ ବର୍ଣ୍ଣନାରେହିଁ କାବ୍ୟଟିର ପର୍ଯ୍ୟବସାନ ହୋଇଅଛି ।

ଭକ୍ତର ଅଧୀନ ଭଗବାନ କୃଷ୍ଣଚନ୍ଦ୍ରଙ୍କର ଭକ୍ତମାନଙ୍କ ପ୍ରତି ଅନୁକମ୍ପା ଏବଂ ଶିଶୁପାଳର ପୂର୍ବ ଜନ୍ମବୃତ୍ତାନ୍ତ ଦ୍ୱିତୀୟ ଛାନ୍ଦରେ ବର୍ଣ୍ଣିତ ହୋଇଅଛି । କୃଷ୍ଣ ଏବଂ ଶିଶୁପାଳ କାବ୍ୟର ନାୟକ ଓ ପ୍ରତିନାୟକ ସ୍ଥାନୀୟ ହୋଇଥିବାରୁ ପାଠକ ସାଧାରଣଙ୍କ ନିକଟରେ ସେମାନଙ୍କର ଯଥାଯଥ ଅବତାରଣା ପାଇଁ କବି ଏହି ଛାନ୍ଦରେ ଯଥାସାଧ୍ୟ ଯତ୍ନ କରିଅଛନ୍ତି ଏବଂ ବିଭିନ୍ନ ପୁରାଣମାନ ମନ୍ଥନ କରି ସେମାନଙ୍କ ସମ୍ବନ୍ଧରେ ଯାହା ପାଇଅଛନ୍ତି, ତାହା ଅତି ସଂକ୍ଷେପରେ ଏହି ଛାନ୍ଦରେ ପ୍ରକାଶ କରିଅଛନ୍ତି । ଉପସଂହାରରେ କବି ବିଦର୍ଭନନ୍ଦିନୀ ରୁକ୍ମିଣୀଙ୍କ ସ୍ୱୟଂବରର ସୂଚନା ମାତ୍ର କରି ଏବଂ ସେ ସ୍ୱୟମ୍ବର ସଭାରେ ଯୋଗ ଦେବାପାଇଁ କୃଷ୍ଣଙ୍କର ବ୍ୟଗ୍ରତା ଦେଖାଇ ଦେଇ ଦ୍ୱିତୀୟ ଛାନ୍ଦ ଶେଷ କରିଅଛନ୍ତି । ଏହି ଛାନ୍ଦରେ କବି ନାୟକ କୃଷ୍ଣଚନ୍ଦ୍ର ଓ ପ୍ରତିନାୟକ ଶିଶୁପାଳର ଜନ୍ମବୃତ୍ତାନ୍ତ ଯେପରି ଭାବରେ ଉପସ୍ଥାପିତ କରିଅଛନ୍ତି, ନାୟିକା ରୁକ୍ମିଣୀଙ୍କର ସେପରି କରି ନାହାନ୍ତି । ଏହାର କାରଣ ଅନୁସନ୍ଧାନ କଲେ ଜଣାଯାଏ ଯେ, ରୁକ୍ମିଣୀଙ୍କ ପରିଣୟ କାବ୍ୟର ପ୍ରତିପାଦ୍ୟ ବିଷୟ ହୋଇଥିବାରୁ ତାଙ୍କର ଜନ୍ମବୃତ୍ତାନ୍ତ ଏବଂ ବାଲ୍ୟ

କୈଶୋର ପ୍ରସ୍ଫୁଟ ଅବସ୍ଥାର ବିଳାସ ବର୍ଣ୍ଣନକୁ ପ୍ରଚ୍ଛନ୍ନ ଭାବରେ ରଖି ସେ ପାଠକମାନଙ୍କ କୌତୂହଳ ଓ ଅନୁସନ୍ଧିତ୍ସା ଉଦ୍ଦୀପିତ କରିଅଛନ୍ତି ।

ତୃତୀୟ ଛାନ୍ଦରେ କବି ବିଦର୍ଭକୁମାରୀ ରୁକ୍ମିଣୀଙ୍କ ରୂପମାଧୁରୀର ଏକ ହୃଦୟସ୍ପର୍ଶୀ ଚିତ୍ର ଦୂତ ମୁଖରେ କୃଷ୍ଣଚନ୍ଦ୍ରଙ୍କୁ ଶୁଣାଇବା ଛଳରେ ପାଠକମାନଙ୍କ ସନ୍ମୁଖରେ ଉପସ୍ଥାପିତ କରିଅଛନ୍ତି । କବିଙ୍କ ଅମର ତୂଳିକା ସଂସ୍ପର୍ଶରେ ସେ ଚିତ୍ର ଏପରି ସରସ ଓ ଜୀବନ୍ତ ହୋଇଅଛି ଯେ ପାଠକଲେ ପାଠକର ପ୍ରାଣ ପରିତୃପ୍ତ ହୋଇଯାଏ । ପ୍ରଥମେ ରୁକ୍ମିଣୀଙ୍କ ବାଲ୍ୟାବସ୍ଥାର ଅବସାନ ଓ କୈଶୋରର ଆଗମନ ସୂଚନା କରି କବି କହି ଅଛନ୍ତି—

"ବାଳଭାବ ଖଣ୍ଡଣ ହୋଇଲେ କିଶୋର
ଧୂଳିଖେଳ ଶିଶୁ ସଙ୍ଗ କଲା ବହୁର
ପୁଣ ପୁଣ ବେଶ ବାସ ଫେଡ଼ଣ ବାନ୍ଧ
ଖରଧା କରଣ ଯତ୍ନ ନୟନ ପିନ୍ଧ
ବଦନ ରଚିଣ ବାନୀ ଦର୍ପଣେ ଚାହେଁ
ଯୁବା ସଖୀମାନଙ୍କର ସନ୍ନିଧେ ଥାଏ ।"

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଯାହାଙ୍କୁ କବି କାବ୍ୟର ନାୟିକା ଆସନରେ ବସାଇ ଅଛନ୍ତି, ତାହାଙ୍କୁ ତ୍ରିଭୁବନର ସକଳ ସାର ସୁଷମାର ଆଧାରରେ ପରିଣତ କରିବା ବୋଧହୁଏ ତାହାଙ୍କର ଉଦ୍ଦେଶ୍ୟ । ତେଣୁ ରୁକ୍ମିଣୀଙ୍କ ରୂପଲାବଣ୍ୟର ମୁକ୍ତମାଧୁରୀ ଚିତ୍ରିତ କରିବାକୁ ଯାଇ ସେ ସର୍ବପ୍ରଥମେ ତାହାଙ୍କ ହୃଦୟର ସୌନ୍ଦର୍ଯ୍ୟ-ପ୍ରୀତି ପ୍ରଦର୍ଶନ କରିଅଛନ୍ତି । ପ୍ରକୃତରେ ସୁନ୍ଦରର ସୌନ୍ଦର୍ଯ୍ୟଜ୍ଞାନ ଓ ଶୋଭାନୁଭାବକତା ନ ଥିଲେ ଜଗତର ଚକ୍ଷୁରେ ସେ ସୌନ୍ଦର୍ଯ୍ୟର ମଧୁର ଅଞ୍ଜନ ଲଗାଇବାକୁ ସମର୍ଥ ହୋଇ ପାରନ୍ତା ନାହିଁ । ଏହି

ଦୃଷ୍ଟିରେ ଚତୁର କବି ନାୟିକାର ଅନ୍ତରରେ ପ୍ରଥମେ ସୌନ୍ଦର୍ଯ୍ୟର ଆଦର ଜଗାଇ ଦେଇଅଛନ୍ତି ।

ବାଲ୍ୟ ଶୈଶବ ଭୂଲ୍ୟ କ୍ରମେ କୈଶୋରର ଅବସାନ ହେଲା । ଯୌବନର ଆବିର୍ଭାବରେ ରୁକ୍ମଣୀଙ୍କ ଜୀବନରୁ କ୍ରମେ ଜଡ଼ତାର ସକଳ ମୋହ ଅପସାରିତ ହେଲା ଏବଂ ଦରବିକସିତ କୁସୁମଙ୍କ କାନରେ ଭ୍ରମରର ଗୁଞ୍ଜନ ଗାନ ପରି ଯେତେବେଳେ ହୃଦୟର କେଉଁ ଅଜ୍ଞାତ କୋଣରେ ପ୍ରେମର ମହାନିମନ୍ତ୍ରଣ ବାଜି ଉଠିଲା, ଯେତେବେଳେ ବିଧାତା ଶୋଭାସାମ୍ରାଜ୍ୟର ପ୍ରତ୍ୟେକ ଅଂଶରୁ ସୁଷମା ସଂଗ୍ରହ କରି ଯେ ପରିପାଟୀରେ ତାଙ୍କର ଅଙ୍ଗଲତିକାକୁ ସଜାଇ ଦେଲେ, ତାହା ଏକାବେଳକେ ବର୍ଣ୍ଣନାତୀତ ! ତଥାପି କବିର କଳ୍ପନା ସେଥିରେ ପରାହତ ନ ହୋଇ ତାହାର ଯେଉଁ ହୃଦୟସ୍ପର୍ଶୀ ଚିତ୍ର ଅଙ୍କନ କରିଅଛି ତାହା ପାଠକଲେ ପ୍ରାଣ ବିଭୋର ହୋଇଯାଏ । ନିମ୍ନରେ ସେ ବର୍ଣ୍ଣନାର କେତେକ ପଂକ୍ତି ଉଦ୍ଧୃତ ହେଲା ।

"କୁନ୍ତଳ କୁଞ୍ଚିତ ନୀଳ କବରୀରେ । ତହିଁର ସମାନ କାହିଁ ହେବ ମୟୂର ।

× ×    × ×

ସେକାଳ ଚନ୍ଦ୍ରମଣ୍ଡଳ ହେବ ଉପମା । ସହିଲେ ରୁକ୍ମଣୀ ମୁଖ ଲାବଣ୍ୟ ସୀମା ।"

ଉଦ୍ଧୃତ ବର୍ଣ୍ଣନାବଳରେ କବି କାର୍ତ୍ତିକ ନୈଷଧକାରଙ୍କ ପଦାଙ୍କ ଅନୁସରଣ କରିଥିଲା ପରି ମନେ ହୁଏ । ଦମୟନ୍ତୀଙ୍କ ରୂପ ବର୍ଣ୍ଣନାରେ ମହାକବି ହର୍ଷ ଯେଉଁ ଅସାଧାରଣ ଚମତ୍କାରିତା ପ୍ରଦର୍ଶନ କରିଅଛନ୍ତି, ଉକ୍ତ ବର୍ଣ୍ଣନା ଅନେକାଂଶରେ ତାହାର ଅନୁରୂପ ହୋଇଅଛି । ଦମୟନ୍ତୀଙ୍କ କେଶ ବର୍ଣ୍ଣନା କରିବାକୁ ଯାଇଁ ମହାକବି ହର୍ଷ ନୈଷଧଚରିତର ଦ୍ୱିତୀୟ ସର୍ଗରେ ଲେଖିଅଛନ୍ତି :—

"ଚିକୁରପ୍ରକରା ଜୟନ୍ତି ତେ ବିଦୁଷୀ ମୂର୍ଦ୍ଧନି ସା ବିଭର୍ତ୍ତି ଯାନ୍
ପଶୁନାପ୍ୟପୁରସ୍କୃତେନ ତତ୍ତୁଳନାମିଚ୍ଛତୁ ଚାମରେଣ କଃ ।"

ପୁନଶ୍ଚ ମହାକବି କାଳିଦାସଙ୍କ ଉକ୍ତି ସଙ୍ଗେ ମଧ୍ୟ କବି କାର୍ତ୍ତିକ ସାମ୍ୟ ରକ୍ଷା କରିଥିବାର ଦେଖାଯାଏ । ପାର୍ବତୀଙ୍କ ରୂପ ବର୍ଣ୍ଣନାରେ କାଳିଦାସ କୁମାରସମ୍ଭବର ସ୍ଥାନ ବିଶେଷରେ କହିଅଛନ୍ତି :—

"ଲଜ୍ଜାତିରଶ୍ଚାଂ ଯଦି ଚେତସି ସ୍ୟାଦସଂଶୟଂ ପର୍ବତରାଜପୁତ୍ର୍ୟାଃ
ତଂ କେଶପାଶଂ ପ୍ରସମୀକ୍ଷ୍ୟ କୁର୍ଯ୍ୟୁର୍ବାଳପ୍ରିୟତ୍ୱଂ ଶିଥିଳଂ ଚମର୍ଯ୍ୟଃ ।

ରୁକ୍ମିଣୀଙ୍କର ଭ୍ରୂଲତା ଓ ନୟନଯୁଗଳର ମାଧୁରୀ ଚିତ୍ରଣରେ ମଧ୍ୟ କବି କାର୍ତ୍ତିକ ନୈଷଧକାରଙ୍କ ବର୍ଣ୍ଣନାକୁ ଅନୁକରଣ କରି ଅଛନ୍ତି, କିନ୍ତୁ ନିଜର ମୌଳିକତାରେ ତାହାକୁ ସରସ ଓ ଜୀବନ୍ତ କରିବାକୁ ଅକ୍ଷମତା ଦେଖାଇ ନାହାନ୍ତି । ରୁକ୍ମିଣୀ ବିଭା ଓ ନୈଷଧ ଚରିତର ନିମ୍ନୋଦ୍ଧୃତ ପଂକ୍ତିନିଚୟରୁ ଆମ୍ଭମାନଙ୍କ ଉକ୍ତିର ସତ୍ୟାସତ୍ୟ ନିରୂପିତ ହୋଇ ପାରିବ । ଯଥା :—

"ଭ୍ରୂଲତା ନୁ ସମ ନାହିଁ କୁସୁମ ଧନୁ । ଦେଖିଣ ସହଜେ ଭଜଅଛି ଅତନୁ । ୧୬ ।
ଅତନିବ ବତକ କମଳ ନୟନ । ଖଞ୍ଜନ ମଦର ମାନ ବାଳ ହରଣ । ୧୭ ।
ରୁକ୍ମିଣୀ ନୟନ ଭଙ୍ଗୀ ପାଇବେ କାହିଁ । କଷ୍ଟାସେ ମଦନ ବାଣ ଅସ୍ତ୍ର ବନାଇ ।୧୮।
(ରୁକ୍ମିଣୀ ବିଭା—୩ୟ ଛନ୍ଦ)

"ସ୍ୱଦୃଶୋ ର୍ଜନୟନ୍ତି ସାନ୍ତ୍ୱନାଂ ଖୁର କଣ୍ଡୂୟନକୈତବାତ୍ ମୃଗାଃ
ଜିତୟୋରୁଦୟତ୍ ପ୍ରମୀଳୟୋ ସ୍ତ୍ୱଦଧୀନେକ୍ଷଣ ଶୋଭୟା ତୟୋଃ ।"
(ନୈଷଧ ଚରିତ—୨ୟ ସର୍ଗ)

"ଅସ୍ମୈବ ଚାପସ୍ୟ ଚତୁର୍ଭୁଜସ୍ୟ ଜାତସ୍ତଦୂର୍ଦ୍ଧ୍ୱୋତ୍ଥିତଃ ନୂବେଦି
ନତାପୟୋଃ କର୍ଣ୍ଣଲତେ ଭ୍ରୂବୋର୍ଦ୍ଧ୍ୱେ ବଣଙ୍କଂଣ ଶୋଭପଟେ କମସ୍ୟାଃ ।"
(ନୈଷଧ ଚରିତ—୨ମ ସର୍ଗ)

ଅନ୍ତୁର ମଧ୍ୟ ରୁକ୍ମିଣୀଙ୍କ ଶ୍ୱାସସମୀର ବର୍ଣ୍ଣନରେ ପଦ୍ମ ସୌରଭର ଅକ୍ଷେପ କରି କବି ଯେପରି ତାହାଙ୍କୁ ପଦ୍ମିନୀ ନାୟିକା ରୂପେ ଉପସ୍ଥାପିତ କରିଅଛନ୍ତି, ତାହା କବି କାଳିଦାସ ତଥା ଶ୍ରୀହର୍ଷଙ୍କ ବର୍ଣ୍ଣନା ଶୃଙ୍ଖଳର ଅନୁରୂପ । ସେ ଯାହାହେଉ, ଯୌବନ-ତରଙ୍ଗିତ ଯୁବତୀ ଅଙ୍ଗର ଲଳିତଲାବଣ୍ୟ ବର୍ଣ୍ଣନରେ କବି ଏହି ଛନ୍ଦରେ ନିଜର ସକଳ ଶକ୍ତି, ସକଳ କଳ୍ପନା ନିୟୋଜିତ କରି ଭାବି-ଶ୍ରୀକୃଷ୍ଣ-ପ୍ରେୟସୀ ରୁକ୍ମିଣୀଙ୍କର ରୂପଗୌରବ ପ୍ରକଟନ କରି ଅଛନ୍ତି । ଦୂତ ମୁଖରୁ ରୁକ୍ମିଣୀଙ୍କର ଏହି ଅଲୌକସାମାନ୍ୟ ସୌନ୍ଦର୍ଯ୍ୟ ସମାଚାର ଶ୍ରବଣ କରି ଶ୍ରୀକୃଷ୍ଣଙ୍କ ପ୍ରାଣରେ ମିଳନର ଏକ ପ୍ରବଳ ବାସନା ଖେଳି ଯାଇଛି ସତ, କିନ୍ତୁ ଚତୁର କବି ଏଠାରେ ତାହାକୁ ପରିସ୍ଫୁଟ କରିବା ପାଇଁ କୌଣସି ପ୍ରକାର ପ୍ରୟାସ ନ କରି କେବଳ ମାତ୍ର ନୀରବତା ଅବଲମ୍ବନ କରି ଅଛନ୍ତି । ତାଙ୍କର ଏହି ନୀରବ-ତାରେହିଁ କୃଷ୍ଣ ଚରିତ୍ରର ସକଳ ଗାମ୍ଭୀର୍ଯ୍ୟ,ସକଳ ମହତ୍ତ୍ୱ ବିକଶିତ, ହୋଇଅଛି ବୋଲି ଅମ୍ଭମାନଙ୍କର ମନେ ହୁଏ ।

ପଦ୍ମପୁରାଣ କିମ୍ବା ଭାଗବତରେ ରୁକ୍ମିଣୀଙ୍କର ଏତାଦୃଶ ରୂପ ବର୍ଣ୍ଣନା ଦୃଷ୍ଟିଗୋଚର ହୁଏ ନାହିଁ । କାଳିଦାସ, ଜୟଦେବ ଓ ହର୍ଷ ପ୍ରମୁଖ ପ୍ରତିଭାଶାଳୀ ସଂସ୍କୃତ କବିମାନଙ୍କ ପଦାଙ୍କ ଅନୁସରଣ କରି କବି କାର୍ତ୍ତିକ ନିଜର ସରଳ ଅଭିବ୍ୟକ୍ତି ଏବଂ ସହଜ ପ୍ରତିଭାର ପରିଚୟ ପ୍ରଦାନ କରିଅଛନ୍ତି ବୋଲି ଅମ୍ଭମାନଙ୍କର ବିଶ୍ୱାସ । ସୂକ୍ଷ୍ମଦର୍ଶୀ ପାଠକଗଣ ଅନୁସନ୍ଧାନ କଲେ ଅବଗତ ହୋଇ ପାରିବେ ଯେ, ଅନ୍ୟର ପ୍ରଭାବରେ ପ୍ରଭାବିତ ହୋଇ କବି ନିଜର ମୌଳିକ-ତାରେ ଅବିଶ୍ୱାସ ପୋଷଣ କରି ନାହାନ୍ତି କିମ୍ବା ନିଜ ପ୍ରତିଭାର ବ୍ୟକ୍ତିତ୍ୱକୁ ବିସ୍ମୃତ ହୋଇ ନାହାନ୍ତି ।

ନାୟିକା ରୁକ୍ମଣୀଙ୍କର ରୂପ ବର୍ଣ୍ଣନା ପରେ ଚତୁର୍ଥ ଛାନ୍ଦରେ କବି ସ୍ୱୟମ୍ବର ସଭାର ଆୟୋଜନ କରି ଅଛନ୍ତି । ବିଦର୍ଭ-ନରେଶଙ୍କ ନିଦେଶାନୁଯାୟୀ ପୁତ୍ର ରୁକ୍ମଣ ସଭାମଣ୍ଡପ ନିର୍ମାଣ ଓ ରାଜନ୍ୟବର୍ଗଙ୍କୁ ନିମନ୍ତ୍ରଣ ପ୍ରେରଣ କାର୍ଯ୍ୟରେ ବ୍ୟାପୃତ ହେଲେ । ନିର୍ଦ୍ଦିଷ୍ଟ ଦିବସ ଉପସ୍ଥିତ ହୁଅନ୍ତେ ବିଦର୍ଭ ରାଜଧାନୀ ନିମନ୍ତ୍ରିତ ନରପତିମାନଙ୍କ ସମାଗମରେ ଓ ବିବିଧ ଉତ୍ସବସୂଚକ ମାଙ୍ଗଳିକ ବାଦ୍ୟନିନାଦରେ ମୁଖରିତ ହେବାକୁ ଲାଗିଲା । ତ୍ରିଲୋକଲକ୍ଷ୍ମୀସ୍ୱରୂପା ସୁନ୍ଦରୀକୁଳ-ଶିରୋମଣି ରୁକ୍ମଣୀଙ୍କ ରୂପଲାବଣ୍ୟର ଲୋଭ ସମ୍ବରଣ କରି ନ ପାରି ଦନ୍ତବକ୍ର, ଜରାସନ୍ଧ, ଭଗଦତ୍ତ, ପୌଣ୍ଡ୍ରକ ଓ ଶିଶୁପାଳ ପ୍ରମୁଖ ନରପତିବୃନ୍ଦ ବିଦର୍ଭ ନଗରରେ ସମବେତ ହେଲେ । ଦୂତ ମୁଖରୁ ଶ୍ରୀକୃଷ୍ଣ ଏ ସ୍ୱୟମ୍ବର ସମ୍ବାଦ ପାଇ ଅନିମନ୍ତ୍ରିତ ଭାବରେ ଗରୁଡ଼ପୃଷ୍ଠରେ ଆରୋହଣ କରି ସେଠାରେ ଉପସ୍ଥିତ ହେଲେ । ସମବେତ ନୃପତି-ମାନଙ୍କ ମଧ୍ୟରୁ ଶିଶୁପାଳ କୃଷ୍ଣଙ୍କ ଦର୍ଶନ ମାତ୍ରେ ତାହାଙ୍କ ଉଦ୍ଦେ-ଶ୍ୟରେ ନାନା ଅପ୍ରିୟ ଉକ୍ତିମାନ ଉଚ୍ଚାରଣ କରି ନିନ୍ଦାବାଦ କରିବାକୁ ଆରମ୍ଭ କଲେ । ସମବେତ ରାଜନ୍ୟବର୍ଗ ସଶରୀରରେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ସୁଦ୍ଧା କେହି କୌଣସି ପ୍ରକାର ଶିଷ୍ଟାଚାର ପ୍ରଦର୍ଶନ କଲେ ନାହିଁ କି ଉପବେଶନ କରିବାକୁ ଅନୁମତି ଦେଲେ ନାହିଁ । ଏହିପରି ସମୟରେ ରୁକ୍ମଣୀ ସୌଧଶିଖରରେ ଥାଇ ତାହାଙ୍କୁ ଦେଖିବାକୁ ପାଇଲେ । ସେହି ପ୍ରଥମ ଦର୍ଶନରେ ସେ କୃଷ୍ଣଙ୍କ ରୂପମାଧୁରୀରେ ମୁଗ୍ଧ ହୋଇ ମନେ ମନେ ତାହାଙ୍କୁ ପତି ରୂପେ ବରଣ କଲେ । ଏହିଠାରେ କବି ରୁକ୍ମଣୀଙ୍କ ମନୋଗତ ଭାବନାକୁ ଫୁଟାଇବାକୁ ଯାଇ ଯେପରି ଭାବରେ କୃଷ୍ଣଙ୍କ ରୂପମାଧୁରୀର ବର୍ଣ୍ଣନା ଲିପିବଦ୍ଧ କରିଅଛନ୍ତି ତାହା ଅତୀବ ହୃଦୟସ୍ପର୍ଶୀ!! ଯଥା :—

"ରୁକ୍ମିଣୀ ଦେଲେ ଅନାଇ　　　ଶ୍ରୀକୃଷ୍ଣ ଅଟନ୍ତି ଏହି
ଦେଖୁଅଛନ୍ତି ଶ୍ୟାମସୁନ୍ଦର ଅଙ୍ଗ
ସୁନ୍ଦର ଭୂଲତା ଧୂଇ　　　ଅଖି ପଦ୍ମ ସଭ ଜୋହି
ନାସିକା ପ୍ରସଙ୍ଗ ରଙ୍ଗ ଅଧର ରଙ୍ଗ
ଶ୍ରବଣେ ମକର କୁଣ୍ଡଳ
ମୁଖକୁ ସମାନ ନାହିଁ ଚନ୍ଦ୍ରମଣ୍ଡଳ । ୮ ।
ମଉଡ ମଣି ମୁକୁଟ　　　କଟିତଟେ ପୀତପଟ
ବିପୁଳ ହୃଦରେ ବନମାଳା ଶୋହୁଛି
ଲଳିତ ମଧୁର ହାସ　　　ଦଶନ ଜ୍ୟୋତି ପ୍ରକାଶ
ଅଖିଳ ନାଗରବୃନ୍ଦ ଚିତ୍ତ ମୋହୁଛି
ବରିଲି ମୁଁ ନିଶ୍ଚୟେ ବର
ଦଇବ ସୁମୁଖ ହୋଇ ଏସନ କର । ୯ ।

କୃଷ୍ଣଚନ୍ଦ୍ର ସମବେତ ରାଜନ୍ୟମଣ୍ଡଳୀର ଏତାଦୃଶ ଅପ୍ରିୟ ଆଚରଣ ଏବଂ ଶିଶୁପାଳର ଅକାରଣ ନିନ୍ଦା ଶ୍ରବଣରେ ଆଉ ଅଧିକ ସମୟ ସ୍ଥିର ହୋଇ ରହି ପାରିଲେ ନାହିଁ । ଗରୁଡ-ପକ୍ଷାଘାତରେ ସ୍ୱୟଂବର ସଭାର ଶ୍ରୀକୁ ବିନଷ୍ଟ ଏବଂ ସମବେତ ନରପତି ବୃନ୍ଦଙ୍କୁ ଇତସ୍ତତଃ ନିକ୍ଷିପ୍ତ କରାଇ ସେ ସେଠାରୁ ପ୍ରତ୍ୟାବର୍ତ୍ତନ କଲେ । ଦର୍ଶକଗଣ ମନେକଲେ ଯେ, ବିଦର୍ଭ-ନରେଶଙ୍କର ଏ ସ୍ୱୟଂବର ଆୟୋଜନ ବ୍ୟର୍ଥ ହୋଇଗଲା । କିନ୍ତୁ ପ୍ରକୃତରେ ତାହା ହେଲା ନାହିଁ । ରାଜଜେମା ରୁକ୍ମିଣୀ ପ୍ରଥମ ଦର୍ଶନରେ ମନେ ମନେ କୃଷ୍ଣଙ୍କୁ ପତିରୂପେ ବରଣ କରିନେଇ ନିଜର କର୍ତ୍ତବ୍ୟ ଏବଂ ସ୍ୱୟଂବର ସଭାର ଉଦ୍ଦେଶ୍ୟ ସାଧନ କଲେ । କ୍ଷୁବ୍ଧହୃଦୟରେ କୃଷ୍ଣ ଦ୍ୱାରକା ଅଭିମୁଖରେ ଯାତ୍ରା କରୁଥିଲାବେଳେ ପଥରେ ରାଜା କୌଶିକ ତାଙ୍କ ପ୍ରତ୍ୟାଗମନର କାରଣ ଅବଗତ ହୋଇ ସାଦର ଅଭ୍ୟର୍ଥନା ପୂର୍ବକ କହିଲେ—

\+ + + + + +
\+ + + +

ଏ ମୋହୋର ସିଂହାସନ ବସେ କର ଭଗବାନ
ରାଜଲକ୍ଷ୍ମୀ ଦେଲ ମୁହିଁ ତବ ପାଦେଣ

ଅଜ୍ଞାନ ଏ ନୃପତିବୃନ୍ଦ
ଜଳ୍ପୁ ମୂର୍ଖ ବୋଲିଣ ଅତୁଳ ଗୋବିନ୍ଦ ।”

ଭକ୍ତଶିରୋମଣି ରାଜା କୌଶିକ କୃଷ୍ଣଙ୍କ ଶ୍ରୀଚରଣରେ ରାଜଲକ୍ଷ୍ମୀ ଅର୍ପଣ କରିବାର କାରଣ ଏହି ଯେ, ସେ କୌଣସି ରାଜସିଂହାସନର ଅଧିକାରୀ ହୋଇ ନ ଥିବାରୁ ସ୍ୱୟମ୍ବର ସଭାରେ ସମବେତ ରାଜନ୍ୟବର୍ଗ ଅଜ୍ଞାନତାବଶତଃ ତାହାଙ୍କର ଅପମାନ କରିଥିଲେ । ତେଣୁ କୌଶିକ ତାଙ୍କୁ ନିଜର ରାଜ-ସିଂହାସନ ଦାନ କରି ସେମାନଙ୍କ ବୃଥା-ଦାମ୍ଭିକତା ଓ ଆଭିଜାତ୍ୟ ଅଭିମାନ ଅପସାରିତ କଲେ । ବୋଧହୁଏ, କୌଶିକ ମନେ କରିଥିଲେ କୃଷ୍ଣଙ୍କର ଏହି ରାଜସିଂହାସନ ପ୍ରାପ୍ତିରେ ଅଭିମାନୀ ନୃପତିଗଣ ତାହାଙ୍କୁ ସ୍ୱୟମ୍ବର ସଭାର ପ୍ରବେଶାଧିକାର ଦେବାକୁ କୁଣ୍ଠିତ ହେବେ ନାହିଁ । ସେ ଯାହାହେଉ, ଏଣେ ଭୀଷ୍ମକ-କଟକରେ ଇତସ୍ତତଃ ନିକ୍ଷିପ୍ତ ନରପତିଗଣ ପୁନର୍ବାର ଏକତ୍ରିତ ହେଲେ । ଠିକ୍ ଏହି ସମୟରେ ଇନ୍ଦ୍ରଙ୍କ ଆଦେଶ ଘେନି ଜଣେ ଦୂତ ସେମାନଙ୍କ ନିକଟରେ ଉପସ୍ଥିତ ହେଲା ଏବଂ ପ୍ରଭୁର ଆଦେଶ ନିମ୍ନୋକ୍ତ ପ୍ରକାରେ ନିବେଦନ କଲା :—

“ନିଷଧର ଶିଶୁପାଳ ଦନ୍ତବକ୍ର ଶାଲ୍ୱରାଜ
ଏହାଙ୍କୁ ଘେନିଣ ସବୁ ନୃପତି ଯିବ

ଯିବା କଉଁଶିକ ପୁର ଅଛନ୍ତି ଯେ ଚକ୍ରଧର
ରାଜଇନ୍ଦ୍ର ଅଭିଷେକ ତୁମ୍ଭେ କରିବ

ଗନ୍ଧର୍ବେ ଥିବ ସଙ୍ଗେହେଁ
ଜଗତ ପାଳିବେ ରାମ ଗୋବିନ୍ଦ ଦୁହେଁ ।”

ଦେବଦୂତର ଆଦେଶକୁ ଶିରୋଧାର୍ଯ୍ୟ କରି ଉପସ୍ଥିତ ରାଜନ୍ୟବୃନ୍ଦ ଜରାସନ୍ଧ ପ୍ରମୁଖ ଅଭିମାନୀ କୃଷ୍ଣଦ୍ୱେଷୀ ନରପତିମାନଙ୍କ ସହ କୌଣ୍ଡିନ୍ୟ ପୁରରେ ଉପନୀତ ହେଲେ । ସେଠାରେ ମହା ସମାରୋହରେ ରାମଗୋବିନ୍ଦଙ୍କର ଅଭିଷେକ କ୍ରିୟା ସଂପନ୍ନ ହେଲା । ତଦନନ୍ତର କୃଷ୍ଣ ଦ୍ୱାରବତୀ ଅଭିମୁଖରେ ପ୍ରସ୍ଥାନ କଲେ ଏବଂ ଉପସ୍ଥିତ ରାଜନ୍ୟ ବର୍ଗ ଯଥାବିଧି ସମ୍ମାନିତ ଓ ଅଭ୍ୟର୍ଥିତ ହୋଇ ନିଜ ନିଜ ଗନ୍ତବ୍ୟ ସ୍ଥାନକୁ ପ୍ରୟାଣ କଲେ ।

ଏହି ଅଭିଷେକ ବିଧି ସମାପନାନ୍ତେ କବି ବିଦର୍ଭ-ରାଜଧାନୀରେ କୃଷ୍ଣଦ୍ୱେଷୀ ଜରାସନ୍ଧ ଓ ରୁକ୍ମ—ଏହି ଉଭୟଙ୍କ ମଧ୍ୟରେ ରୁକ୍ମିଣୀଙ୍କ ବିବାହ ନେଇ ନାନା ଆଲୋଚନାର ଅବତାରଣା କରିଅଛନ୍ତି । ଦ୍ୱିତୀୟ ସ୍ୱୟମ୍ବର ବିଧି-ବହିର୍ଭୂତ—ତଥାପି ସେଥିରେ ପୁଣି ସେମାନେ କୃଷ୍ଣଙ୍କ ଉପସ୍ଥିତି ଆଶଙ୍କା କରି ଶେଷରେ ସ୍ଥିର କଲେ ଯେ ଉପସ୍ଥିତ ରାଜାମାନଙ୍କ ମଧ୍ୟରୁ ଜଣେ ସତ୍‌କୁଳ-ସମ୍ଭୂତ ଓ ରୂପବାନ୍ ରାଜାଙ୍କୁ ନିର୍ବାଚିତ କରି ତାହାଙ୍କ ହସ୍ତରେ ରୁକ୍ମିଣୀଙ୍କୁ ଅର୍ପଣ କରିବା ସମୀଚୀନ । ଏହି ସିଦ୍ଧାନ୍ତ ଅନୁସାରେ ରୁକ୍ମ ଦମଘୋଷସୁତ ମିତ୍ର ଶିଶୁପାଳଙ୍କୁ ଭଗିନୀପତି ରୂପେ ନିର୍ବାଚନ କଲେ ଏବଂ ଜରାସନ୍ଧ ତାଙ୍କର ଏହି ପ୍ରସ୍ତାବକୁ ସମର୍ଥନ କଲେ । କିନ୍ତୁ ସୁଖର କଥା, ଏ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେବା ପୂର୍ବରୁ ରୁକ୍ମିଣୀଙ୍କର କର୍ଣ୍ଣଗୋଚର ହେଲା । ପ୍ରଥମ ଦର୍ଶନରେ ଯେଉଁ କୃଷ୍ଣଙ୍କ ଶ୍ରୀଚରଣରେ ସେ ଜୀବନ ବିକି ଦେଇ ଅଛନ୍ତି, ତାଙ୍କ ବ୍ୟତୀତ ଅନ୍ୟ ଏକ ରାଜା ଶିଶୁପାଳଙ୍କ ସଙ୍ଗେ ତାଙ୍କର ବିବାହ ସମାହିତ ହେବ—ଏହି ଚିନ୍ତାରେ କବି ତାହାଙ୍କ ହୃଦୟରେ ଆଲୋଡନାର ଏକ ତରଳ ତରଙ୍ଗ ଖେଳାଇ ଦେଇ ଏ ଛାନ୍ଦ ଶେଷ କରିଅଛନ୍ତି ।

ପଦ୍ମପୁରାଣ କିମ୍ବା ଭାଗବତରେ ରୁକ୍ମିଣୀଙ୍କର ସ୍ୱୟମ୍ବର-ସଭା ଏବଂ ସେଠାକୁ କୃଷ୍ଣଙ୍କର ଗମନ ଓ ଗରୁଡ଼ର ପକ୍ଷାଘାତରେ ସଭାଭଙ୍ଗ ପ୍ରଭୃତି ବିଷୟ ଆଦୌ ବର୍ଣ୍ଣିତ ହୋଇ ନାହିଁ । ପରନ୍ତୁ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ କୃତ ହରିବଂଶରେ ଏ ପ୍ରସଙ୍ଗର ଅବତାରଣା କରାଯାଇ ଥିବାର ଦେଖାଯାଏ । ସଂସ୍କୃତଭାଷା ଲିଖିତ ମୂଳହରିବଂଶ ଏ ପ୍ରସଙ୍ଗରେ ନୀରବତା ଅବଲମ୍ବନ କରିଥିବାର ଦେଖି ମନେହୁଏ ଯେ ଅଚ୍ୟୁତାନନ୍ଦ ନିଜର କଳ୍ପନାବଳରେ ଏପରି ଏକ ବର୍ଣ୍ଣନା ସ୍ୱରଚିତ ହରିବଂଶରେ ଲିପିବଦ୍ଧ କରିଅଛନ୍ତି । ଏ ସ୍ଥଳରେ ଆମ୍ଭମାନଙ୍କର କବି କାର୍ତ୍ତିକ କାବ୍ୟର କଥାଭାଗକୁ ଅପେକ୍ଷାକୃତ ଅଧିକତର ଜଟିଳ କରିବାପାଇଁ ଯେତେଦୂର ସମ୍ଭବ ଅଚ୍ୟୁତାନନ୍ଦଙ୍କ ପ୍ରଭାବର ଆବର୍ତ୍ତରେ ପଡ଼ିଅଛନ୍ତି । ଏହା ବୋଲି ଯେ ସେ ନିଜର ବ୍ୟକ୍ତିତ୍ୱକୁ ଭୁଲି ଯାଇ ଅଛନ୍ତି ବା ନିଜର ପ୍ରତିଭାରେ ଅବିଶ୍ୱାସ ପୋଷଣ କରିଅଛନ୍ତି ତାହା ନୁହେ, ପରନ୍ତୁ ନିଜର ମୌଳିକତା ପ୍ରଦର୍ଶନରେ ଯଥେଷ୍ଟ ପ୍ରୟାସ କରିଅଛନ୍ତି । ଅବାନ୍ତର ଭାବରେ ଏହି ସ୍ୱୟମ୍ବର ପ୍ରସଙ୍ଗର ଅବତାରଣାରେ ଅବଶ୍ୟ କାବ୍ୟର କୌଣସି ପ୍ରକାର ଅଙ୍ଗହାନି ଘଟି ନାହିଁ, ବରଂ କୃଷ୍ଣଙ୍କ ପ୍ରତି ରୁକ୍ମିଣୀଙ୍କର ଅନୁରକ୍ତି ପ୍ରକଟିତ ହୋଇଅଛି । ଗରୁଡ଼ର ପକ୍ଷାଘାତରେ ଯେପରି ଭାବରେ ସଭାଭଙ୍ଗ କରାଯାଇଅଛି ଏବଂ ଅଭିମାନୀ ନିନ୍ଦୁକ ନରପତିମାନଙ୍କୁ ଯେପରି ଭାବରେ ପରାଭବ ପ୍ରଦତ୍ତ ହୋଇଅଛି, ତାହା ଯେପରି କୃଷ୍ଣଙ୍କ ଅପାର ମହିମା ପ୍ରକାଶ କରେ, ସେହିପରି ମଧ୍ୟ ପାପ ବା ଅନ୍ୟାୟର ପ୍ରତିବାଦ ସୂଚନା କରେ । ପଦ୍ମପୁରାଣର ବର୍ଣ୍ଣନାରୁ ଜଣାଯାଏ ଯେ, ରୁକ୍ମିଣୀ ପିତୃଗୃହରେ ଅବସ୍ଥାନ କରୁଥିଲେ ବେଳେ "ବ୍ରତଚର୍ଯ୍ୟାପରା ଭୂତ୍ୱା ଧ୍ୟାୟନ୍ତୀ ପୁରୁଷୋତ୍ତମମ୍" ଅର୍ଥାତ୍ ଶ୍ରୀକୃଷ୍ଣଙ୍କୁ ପତିରୂପେ ପାଇବା ପାଇଁ ସେ ପିତୃଗୃହରେ ଅବସ୍ଥାନ

କାଳରେ ନାନାଦ ବ୍ରତ-ଉପବାସ ପ୍ରଭୃତ କର ମନେ ମନେ ତାହାଙ୍କୁହିଁ କାମନା କରୁଥିଲେ, କନ୍ତୁ ପିତା ଭୀଷ୍ମକ ପୁତ୍ର ରୁକ୍ମଣର ପରାମର୍ଶ ଅନୁସାରେ ତାହାଙ୍କୁ ଶିଶୁପାଳ ହସ୍ତରେ ଅର୍ପଣ କରବାକୁ ମନସ୍ଥ କଲେ । ଭାଗବତର ବର୍ଣ୍ଣନାରୁ ମିଳେ ଯେ, ରୁକ୍ମଣୀ ଅତଥି ଓ ଗୁରୁଜନମାନଙ୍କ ମୁଖରୁ ଶ୍ରୀକୃଷ୍ଣଙ୍କ ରୂପ, ବୀର୍ଯ୍ୟ, ଗୁଣ ଓ ଶ୍ରୀର ବର୍ଣ୍ଣନା ଶ୍ରବଣ କର ତାହାଙ୍କ ପ୍ରତ ଆକୃଷ୍ଟ ହୋଇଥିଲେ ଏବଂ ମନେ ମନେ ପତରୂପେ ବରଣ କରଥିଲେ ।

ଚତୁର୍ଥ ଛାନ୍ଦର ଉପସଂହାରରେ କବ ରୁକ୍ମଣୀଙ୍କୁ ଶିଶୁପାଳ ସହତ ବବାହତ ହେବାର ସଂବାଦ ଶୁଣାଇ ତାହାଙ୍କ ହୃଦୟରେ ଯେଉଁ ଆଲୋଡ଼ନାର ସୂଚନା କରଥିଲେ, ପଞ୍ଚମ ଛାନ୍ଦରେ ତାହାକୁ ସଖୀମାନଙ୍କ ସହ କଥୋପକଥନ ଓ ବଳାପରେ ପରିସ୍ଫୁଟ କରଅଛନ୍ତି । ଦମଘୋଷ-ସୁତ ଶିଶୁପାଳ ହସ୍ତରେ ତାହାଙ୍କୁ ଅର୍ପଣ କରବାରେ ନଜ ଭ୍ରାତାର ଅଭସନ୍ଧି ଅବଗତ ହୋଇ ସେ ଯତ୍‌ପରୋନାସ୍ତି ବ୍ୟଥିତ ହୋଇଅଛନ୍ତି ଏବଂ ସେଥିପାଇଁ ଭ୍ରାତାଙ୍କୁ ମଧ୍ୟ ନନ୍ଦା କରଅଛନ୍ତି । ସଙ୍ଗେ ସଙ୍ଗେ କୃଷ୍ଣଙ୍କ ରୂପଗୁଣ ଏବଂ ସ୍ୱୟମ୍ବର-ସଭାକୁ ଗରୁଡ଼ ବାହନରେ ଆଗମନ ଇତ୍ୟାଦ ବଷୟ ତାହାଙ୍କ ମାନସ-ପଟରେ ଭାସି ଯାଇଅଛି । କବଙ୍କର ଉକ୍ତକାରେ ରୁକ୍ମଣୀଙ୍କର ସେ ଭାବନା ଅତୀବ ହୃଦୟଗ୍ରାହୀ ହୋଇଅଛି । ନମ୍ନରେ ତାହାର କେତେକାଂଶ ଉଦ୍ଧୃତ ହେଲା :—

"ସଚ୍ଚ କର କହୁଛ ତୁମ୍ଭ ଆଗେ । କୃଷ୍ଣ ବନୁ ମନ ଆନ ନ ଲାଗେ

\+ + + + +

\+ + + + +

ଗରୁଡ଼ ପିଠିରେ । ଦନେ କରଥିଲେ ସଭାଙ୍କଠାରେ ।"

ଏହିପରି ଭାବରେ କୃଷ୍ଣଙ୍କର ରୂପଗୁଣ ଚିନ୍ତା କରି ରୁକ୍ମିଣୀ ନିତାନ୍ତ ଶୋକାକୁଳ ହେଲେ ଏବଂ ଭାବ-ବିବାହ ବିଷୟ ଭାବି ଭାବି ଶେଷରେ ମୂର୍ଚ୍ଛିତ ହୋଇ ପଡିଲେ । ସହଚରୀଗଣ ନାନା ଉପଚାରର ପ୍ରୟୋଗରେ ତାଙ୍କର ଚେତନା ଆନୟନ କଲେ ଏବଂ ସାନ୍ତ୍ୱନା ପ୍ରଦାନ କରି କୃଷ୍ଣଙ୍କ ନିକଟକୁ ପତ୍ରସହ ଏକ ଦୂତ ପ୍ରେରଣ କରିବାର ସ୍ଥିର କଲେ । ସେମାନଙ୍କର ଏହି ପରାମର୍ଶ ଅନଯାୟୀ କାର୍ଯ୍ୟ କରି-ବାକୁ ରୁକ୍ମିଣୀ ପ୍ରଥମେ କୁଣ୍ଠିତା ହେଲେହେଁ ପରେ ସେମାନଙ୍କ ସାନୁନୟ ଅନୁରୋଧ ଏଡ଼ି ନ ପାରି ପତ୍ର ଲେଖିଲେ । (୨୨ ପଦଠାରୁ ୨୮ ପଦ ଦ୍ରଷ୍ଟବ୍ୟ) । ପତ୍ରଟି ଜଣେ ବ୍ରାହ୍ମଣ ଦୂତ ହସ୍ତରେ ଯଥା-କାଳରେ କୃଷ୍ଣଙ୍କ ସମୀପକୁ ପ୍ରେରିତ ହେଲା । ପତ୍ରଖଣ୍ଡି ଆମୂଳାନ୍ତ ପାଠ କରି କୃଷ୍ଣ ସକଳ ବିଷୟ ଅବଗତ ହେଲେ ଏବଂ ରୁକ୍ମିଣୀଙ୍କୁ ଏକାନ୍ତ ଅନୁରକ୍ତ ଦେଖି ତତ୍‌ପ୍ରସ୍ତାବିତ ପନ୍ଥା ଅବଲମ୍ବନରେ ତାହାଙ୍କର ପାଣିଗ୍ରହଣ କରିବାକୁ ବ୍ରାହ୍ମଣ ଦୂତ ନିକଟରେ ପ୍ରତିଶ୍ରୁତ ହେଲେ । ଏହିଠାରେ କବି କାର୍ତ୍ତିକ ପଞ୍ଚମ ଛାନ୍ଦର ଉପସଂହାର କରିଅଛନ୍ତି ।

ପଦ୍ମପୁରାଣରେ ରୁକ୍ମିଣୀ ବିଭାର ଏହି ପ୍ରସଙ୍ଗଟି ଅତି ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି ଏବଂ ତାହା ପାଠକଲେ ଜଣାଯାଏ ଯେ, ପୁରୋହିତ ପୁତ୍ର ଦୂତରୂପେ ଶ୍ରୀକୃଷ୍ଣଙ୍କ ସମୀପକୁ ଯାଇଥିଲା । ସହଚରୀମାନଙ୍କ ପରାମର୍ଶ ଅନୁସାରେ କୃଷ୍ଣଙ୍କ ନିକଟକୁ ରୁକ୍ମିଣୀଙ୍କର କୌଣସି ପତ୍ରର ବର୍ଣ୍ଣନା ସେଥିରେ ଆଦୌ ଦେଖିବାକୁ ମିଳେ ନାହିଁ । ପାଠକମାନଙ୍କର ଅବଗତି ନିମିତ୍ତ ପଦ୍ମପୁରାଣର ସେହି ଶ୍ଳୋକକତିପୟ ନିମ୍ନରେ ଉଦ୍ଧୃତ ହେଲା :—

"କନ୍ତୁର୍ଭିଠାଂ ଶିଶୁପାଳାସ୍ୟ ବିବାହଂ ପାର୍ଥିବୋତ୍ତମଃ
ଚକାର ଯତ୍ନଂ ପୁତ୍ରେଣ ରୁକ୍ମିଣା ସବଧୀମତା

ପୁରୋହିତସ୍ତଂ ବିପ୍ରଂ ପ୍ରେଷୟାମାସ ରୁକ୍ମିଣୀ
ଅବିନ୍ଦନ୍ କୃଷ୍ଣଂ ଭର୍ତ୍ତାରଂ ସଦ୍ୟସ୍ତଂ ଦ୍ୱାରକାଂ ଯଯୌ
ସମେତ୍ୟ କୃଷ୍ଣଂ ରମ୍ୟଂ ଚ ଘାଭ୍ୟାଂ ଦଧିବଦଚ୍ଛିତଃ
ଏକାନ୍ତେ ସନ୍ମାଚଷ୍ଟ ରୁକ୍ମିଣୀ କଥିତଂ ତୟୋଃ ।”

କିନ୍ତୁ ଭାଗବତର ବର୍ଣ୍ଣନାରୁ ମିଳେ ଯେ, ଏକ ବୟସ୍କ ବ୍ରାହ୍ମଣ ରୁକ୍ମିଣୀଙ୍କ ଗୋପନ ପତ୍ରସହ ଦୂତରୂପେ ପ୍ରେରିତ ହୋଇଥିଲେ । କବି କାର୍ତ୍ତିକ ଏ ପ୍ରସଙ୍ଗରେ ଯେଉଁ ପତ୍ରର ଅବତାରଣା କରିଅଛନ୍ତି, ତହିଁରେ ଭାଗବତର ପ୍ରଭାବ ଅତିମାତ୍ରାରେ ପତିତ ହୋଇଅଛି-ଏପରି କି ଅନେକ ସ୍ଥଳରେ ଶବ୍ଦସାମ୍ୟ ମଧ୍ୟ ସମାଲୋଚକର ଦୃଷ୍ଟିରେ ପଡ଼େ ।

ଷଷ୍ଠ ଛାନ୍ଦର ପ୍ରାରମ୍ଭରେ କବି ବର୍ଣ୍ଣନୀୟ ବିଷୟର ଅବତାରଣା କରିବା ପୂର୍ବରୁ ଆନୁଷଙ୍ଗିକ ଭାବରେ ପ୍ରଭାତ-ପ୍ରକୃତିର ଏକ ନିସର୍ଗ ସୁନ୍ଦର ଚିତ୍ର ଅଙ୍କନ କରି ଅଛନ୍ତି । କବିକୁଳ ଚିରକାଳ ସୌନ୍ଦର୍ଯ୍ୟର ଉପାସକ । ପ୍ରଭାତର କାନନକୁନ୍ତଳେ ମୃଦୁମନ୍ଦ ସମୀରଣର ମର୍ମର ସଙ୍ଗୀତ ଏବଂ ତାହାର ପଛେ ପଛେ ନବବିକଶିତା କୁସୁମ-କାମିନୀମାନଙ୍କର ସରଳ ସହଜ ହାସ ଓ ସ୍ୱର୍ଗୀୟ ସୌରଭ-ସମ୍ପଦ ସେମାନଙ୍କ ପ୍ରାଣରେ କି ଏକ ମହାଭାବର ଧାରା ଖେଳାଇଦିଏ ! ତେଣୁ ସେମାନେ ଏହି ମାହେନ୍ଦ୍ର ମୁହୂର୍ତ୍ତରେ ପ୍ରଭାତ-ପ୍ରକୃତିର ସମ୍ବର୍ଦ୍ଧନା ନା କରି ସତେ ଯେପରି ସ୍ଥିର ହୋଇ ରହି ପାରନ୍ତି ନାହିଁ ! ପ୍ରକୃତିର ଏହି ପ୍ରଭାତପୂଜା କବି କାର୍ତ୍ତିକଙ୍କ ସରସ ତୂଳିକାରେ ଯେପରି ପ୍ରାଣସ୍ପର୍ଶୀ ହୋଇ ପାରିଛି, ତାହା ଅନନ୍ୟସାଧାରଣ । ପ୍ରକୃତିର ଏହି ଅମୃତ-ବେଳାରେ କବି ଶ୍ରୀକୃଷ୍ଣଙ୍କୁ ଶଯ୍ୟାରୁ ଉଠାଇ ବ୍ରହ୍ମଚିନ୍ତାରେ ନିୟୋଜିତ କରିଅଛନ୍ତି ଏବଂ ରୁକ୍ମିଣୀ ପ୍ରେରିତ ଦୂତକୁ ମଧ୍ୟ ପ୍ରାତଃକୃତ୍ୟ ସମାପନରେ ବ୍ୟସ୍ତ କରାଇ ଅଛନ୍ତି ।

ପ୍ରାତଃକୃତ୍ୟ ଶେଷରେ ବ୍ରାହ୍ମଣଦୂତ ଓ ଶ୍ରୀକୃଷ୍ଣ ଉଭୟେ ନନ୍ଦୀଘୋଷ ରଥରେ ଆସୀନ ହୋଇ ବଦର୍ଭ ଅଭିମୁଖରେ ଗମନ କଲେ ଏହି ସମ୍ବାଦ ପାଇ ବଳରାମ ମଧ୍ୟ ତାଳଧ୍ୱଜରଥରେ ସୈନ୍ୟ ସାମନ୍ତ ସହ ତାହାଙ୍କର ଅନୁଗମନ କଲେ । ପଥରେ ସସୈନ୍ୟସାମନ୍ତ ଅଗ୍ରଜଙ୍କୁ ଦେଖି କୃଷ୍ଣ ଯତ୍ପରୋନାସ୍ତି ଆନନ୍ଦିତ ହେଲେ । କ୍ରମେ ଝିଣ୍ଟୁକ-କଣ୍ଟକର ନିକଟତମ ପ୍ରଦେଶରେ ପଦାର୍ପଣ କରନ୍ତେ କୃଷ୍ଣ ଶ୍ରାନ୍ତି ଅପନୋଦନ ନିମିତ୍ତ ସେଠାରେ ସୈନ୍ୟସାମନ୍ତ ଓ ଅଗ୍ରଜଙ୍କ ସହ ଶିବିର ସ୍ଥାପନ କଲେ । ଏହିଠାରେ ଚତୁର କବି ଶ୍ରାନ୍ତକ୍ଳାନ୍ତ ପଥିକମାନଙ୍କର ପ୍ରୀତିବର୍ଦ୍ଧନ ପାଇଁ ହେଉ ବା ଭାବ-ତରଳ ତୂଳକାନ୍ତର ସୌନ୍ଦର୍ଯ୍ୟ-ତୃଷ୍ଣା ମେଣ୍ଟାଇବା ପାଇଁ ହେଉ, ସନ୍ଧ୍ୟାପ୍ରକୃତିର ଏକ ମଧୁର ପ୍ରତିକୃତି ଅଙ୍କନ କରିଅଛନ୍ତି । ସେତେବେଳକୁ ସବିତାର କନକ-କିରଣ ନୀଳ ଗଗନର ବିଳାସ-ବାରିଧିରେ ସମ୍ପୂର୍ଣ୍ଣରୂପେ ହ୍ରାସ ହୋଇ ସାରିଥିଲା । ନବୋଦିତ କଳାକରର ଧବଳହାସରେ ଚତୁର୍ଦ୍ଦିଗ ପରିପ୍ଳୁତ ହୋଇ ସତେ ଯେପରି ଏକ ନୂତନ ରଜତ ସୃଷ୍ଟିର ଶୋଭା ଧାରଣ କରିଥିଲା । କବି ଜ୍ୟୋତ୍ସ୍ନାର ଏହି ମୋହନ ବିଳାସରେ ନିମିଷକ ପାଇଁ ସତେ ଯେପରି ନିଜର ଅସ୍ତିତ୍ୱକୁ ପାସୋରି ପକାଇ ଲଳିତ ମଧୁର ଛନ୍ଦରେ ତାହାର ଉଦ୍‌ବୋଧନ କଲେ ! ଯଥା—

"ପ୍ରବେଶ ହୋଇଲା ପ୍ରଦୋଷ କାଳ
ଶଶିକଳା ଦଶିଲା ସେ ଗଗନ ମଣ୍ଡଳ । ୨୧ ।

× ×
× ×

ଦକମଣେ ବରତାପ ଶମନ୍ତେ ଗଲା
ତରୁଲତା ପଲ୍ଲବ ସରସା ପାଇଲା । ୩୪ ।"

ସନ୍ଧ୍ୟା ପ୍ରକୃତିର ଏହି ବିପୁଳ ଶୋଭାରାଶି ଭିତରେ ରାମକୃଷ୍ଣ ସନ୍ଧ୍ୟାବିଧି ସମାପନ କରି ରୁକ୍ମଣୀଙ୍କ ବିବାହ ସମ୍ପର୍କୀୟ ଜଟିଳ ଆଲୋଚନାରେ ନିରତ ହୋଇଅଛନ୍ତି ଏବଂ କ୍ଳାନ୍ତ ସୈନିକଗଣ ଆନନ୍ଦରେ ଆରାମ ଉପଭୋଗ କରୁଅଛନ୍ତି । ଶେଷରେ ସ୍ଥିର ହେଲା ଯେ, ବଳରାମ ସୈନ୍ୟସାମନ୍ତ ସହ ସେହିଠାରେ ଅବସ୍ଥାନ କରିବେ ଏବଂ କୃଷ୍ଣ ଏକାକୀ ଭକ୍ତ ରଜନୀରେ ବିଦର୍ଭ ନଗରରେ ପ୍ରବେଶ କରିବେ । ପ୍ରସ୍ତାବ ଅନୁଯାୟୀ କୃଷ୍ଣ ଯଥାସମୟରେ ବିଦର୍ଭରାଜଧାନୀରେ ଉପସ୍ଥିତ ହେଲେ ଏବଂ ରୁକ୍ମଣୀଙ୍କ ଅବଗତି ନିମିତ୍ତ ସହଗାମୀ ବ୍ରାହ୍ମଣଦୂତଙ୍କୁ ତାହାଙ୍କ ନିକଟକୁ ପ୍ରେରଣ କଲେ । ଦୂତମୁଖରୁ ଭୀଷ୍ମକନରପତି ଶ୍ରୀକୃଷ୍ଣଙ୍କ ଆଗମନ ସମ୍ବାଦ ପାଇ କନ୍ୟାର ପାଣିଗ୍ରହଣ ବିଷୟରେ ନାନା ଆଶଙ୍କା ପୋଷଣ କରିବାକୁ ଲାଗିଲେ ।

ଏହିଠାରେ କବି କାର୍ତ୍ତିକ ଭୀଷ୍ମକ ନୃପତିଙ୍କର ମାନସିକ ଆବେଗ ବିଶେଷ ଭାବରେ ଚିତ୍ରିତ ନ କରି ରୁକ୍ମଣୀଙ୍କ ମାନସିକ ଅବସ୍ଥା ପ୍ରତି ପାଠକମାନଙ୍କର ଦୃଷ୍ଟି ଆକର୍ଷିତ କରିଅଛନ୍ତି । ଶରିକେଳାର ବୃଦ୍ଧି ସଙ୍ଗେ ସଙ୍ଗେ ରୁକ୍ମଣୀଙ୍କ ମନର ଆକୁଳତା କ୍ରମେ ଅଧିକରୁ ଅଧିକତର ବର୍ଦ୍ଧିତ ହେଉଥାଏ । ଶ୍ରୀକୃଷ୍ଣଙ୍କ ନିକଟରୁ ଦୂତର ପ୍ରତ୍ୟାବର୍ତ୍ତନରେ ବିଳମ୍ବ ଦେଖି ସେ ମନରେ ନାନା ଅମୂଳକ ଅଶଙ୍କା ପୋଷଣ କରୁଥାନ୍ତି ଏବଂ ସହଚରୀମାନଙ୍କ ନିକଟରେ ନିଜର ଭାବ-ଭାଗ୍ୟ ବିପର୍ଯ୍ୟୟ କଥା ପକାଇ ନିଜର କପାଳକୁ ଧିକ୍କାର ପ୍ରଦାନ କରୁଥାନ୍ତି । ସଖୀଗଣ ନାନାପ୍ରକାରେ ଆଶ୍ୱାସନା ଦେଇ ସୁଦ୍ଧା ଅନ୍ତରର ସେ ଆକୁଳତାକୁ ଶାନ୍ତ କରିପାରୁ ନ ଥାନ୍ତି । ସୁଖର କଥା, କବି ଏହିଠାରେ ଶୁଭଶକୁନମାନଙ୍କର ସୂଚନା ଦେଇ ତାଙ୍କ ମନରେ ଆଶ୍ୱାସନା ପ୍ରଦାନ କରିଅଛନ୍ତି । ଏହି ସମୟରେ ଶୁଭ

ସମ୍ବାଦ ସହ ଶ୍ରୀକୃଷ୍ଣ ପ୍ରେରିତ ଦୂତ ତାଙ୍କର ସମ୍ମୁଖୀନ ହେଲା ଏବଂ ତାହାଠାରୁ ସେ କୃଷ୍ଣଙ୍କ ଆଗମନ ଓ ରାଜଧାନୀରେ ଅବସ୍ଥାନ ସମ୍ବାଦ ଶ୍ରବଣ କରି ଆନନ୍ଦରେ ଆତ୍ମହରା ହୋଇପଡ଼ିଲେ । ଏଠାରେ କବି ରୁକ୍ମଣୀଙ୍କର ସେହି ଅପାର ଆନନ୍ଦରେ ପାଠକପାଠିକାଙ୍କୁ ଆନନ୍ଦିତ କରି ଏ ଛାନ୍ଦଟିର ସମାପ୍ତି ସୂଚନା କରିଅଛନ୍ତି ।

ପଦ୍ମପୁରାଣରେ ଏ ପ୍ରସଙ୍ଗର ବର୍ଣ୍ଣନା ଅତି ସଂକ୍ଷେପରେ କରା ଯାଇଅଛି ଏବଂ ତାହା ପାଠ କଲେ ଜଣାଯାଏ ଯେ, ବିଦର୍ଭ ଦେଶାଗତ ଦୂତ ରାମକୃଷ୍ଣ ଉଭୟଙ୍କୁ ରୁକ୍ମଣୀଙ୍କ ବିବାହ ସମ୍ବାଦ ଅର୍ପଣ କରନ୍ତେ ସେ ଦୁଇ ଭ୍ରାତା ଦୂତ ସହ ଭୀଷ୍ମକ ରାଜଧାନୀ ଅଭିମୁଖରେ ଯାତ୍ରା କରିଥିଲେ । ନିମ୍ନରେ ପଦ୍ମପୁରାଣର ମୂଳବର୍ଣ୍ଣନା ଉଦ୍ଧୃତ ହେଲା—

"ଶ୍ରୁତ୍ୱା ରାମ କୃଷ୍ଣୌତୁ ତେନ ବିପ୍ରେଣ ଧୀମତା
ସର୍ବ ଶସ୍ତ୍ରାସ୍ତ୍ର ସଂପୂର୍ଣ୍ଣ ରଥମାକାଶଗଂ ପ୍ରଭୁଃ । ୧୪ ।

ଅରୁହ୍ୟ ଦ୍ୱିଜ ମୁଖ୍ୟେନ ଦାରୁକେଣ ମହାତ୍ମନା
ବିଦର୍ଭନଗରଂ ତୂର୍ଣ୍ଣଂ ଜଗ୍ମତୁଃ ପୁରୁଷୋତ୍ତମୌ । ୧୫ ।

ଭାଗବତର ବର୍ଣ୍ଣନା ପାଠ କଲେ ଜଣାଯାଏ ଯେ, କୃଷ୍ଣଙ୍କ ନିକଟରୁ ଦୂତର ପ୍ରତ୍ୟାବର୍ତ୍ତନରେ ବିଳମ୍ବ ଘଟିବାରୁ ରୁକ୍ମଣୀଙ୍କ ମନ ଯେପରି ଚିନ୍ତାକୁଳିତ ହୋଇଥିଲା ଏବଂ ପରେ ସେହି ଆକୁଳତା ଯେପରି ବାମ ବାହୁ, ବାମ ଉରୁ ଓ ବାମ ନୟନସ୍ପନ୍ଦନରେ ଅପସାରିତ ହୋଇଥିଲା; ରୁକ୍ମଣୀ ବିଭାରେ କବି କାର୍ତ୍ତିକ ଠିକ୍ ତାହାର ଅନୁକରଣରେ କଥାବସ୍ତୁର ସୌଷ୍ଠବ ପରିସ୍ଫୁଟ କରିଅଛନ୍ତି । ତେବେ ପାର୍ଥକ୍ୟ ଭିତରେ ଏତିକି ଯେ, କବି କାର୍ତ୍ତିକଙ୍କ ବର୍ଣ୍ଣନାନୁସାରେ ପ୍ରଥମେ ବିମଳା ସଖୀର ବାମବାହୁସ୍ପନ୍ଦନ ଏବଂ

ପରେ ରୁକ୍ମଣୀଙ୍କ ବାମ ନୟନ ସ୍ଫୁରଣ ହୋଇଅଛି । କିନ୍ତୁ ଭାଗବତରେ ରୁକ୍ମଣୀଙ୍କର ଆକୁଳତାର ଅପସାରଣ ପାଇଁ ଯେଉଁ ସବୁ ଆଙ୍ଗିକ ବିକାର ବର୍ଣ୍ଣନା ଛଳରେ କାର୍ଯ୍ୟସିଦ୍ଧିର ସୂଚନା କରାଯାଇଅଛି, ସେ ସମସ୍ତ ରୁକ୍ମଣୀଙ୍କ ଅଙ୍ଗରେ ପ୍ରଦର୍ଶିତ ହୋଇଅଛି । ଏତଦ୍‌ବ୍ୟତୀତ ଭାଗବତ ବର୍ଣ୍ଣନାରୁ ଆହୁରି ମଧ୍ୟ ମିଳେ ଯେ, ଭୀଷ୍ମକ ନୃପତି କନ୍ୟାର ବିବାହ ଦର୍ଶନ ନିମିତ୍ତ କୃଷ୍ଣଙ୍କର ଆଗମନ ସମ୍ବାଦ ପାଇ ନାନାବିଧ ପୂଜୋପକରଣ ସହ ତାଙ୍କର ଅଭ୍ୟର୍ଥନା କରିଥିଲେ ଏବଂ ରାଜଧାନୀରେ ତାହାଙ୍କର ଅବସ୍ଥାନ ପାଇଁ ସୁବନ୍ଦୋବସ୍ତ କରିଦେଇ ସାଧୁଜନୋଚିତ ବ୍ୟବହାର ପ୍ରଦର୍ଶନ କରିଥିଲେ ।

ସପ୍ତମ ଛାନ୍ଦରେ କବି ରାଜନନ୍ଦିନୀ ରୁକ୍ମଣୀଙ୍କ ବିବାହର ମହାସମାରୋହ ବର୍ଣ୍ଣନରେ ନିଜର ସକଳ ଶକ୍ତି ନିୟୋଜିତ କରି ପାଠକମାନଙ୍କ ନିକଟରେ ଏକ ଐଶ୍ୱର୍ଯ୍ୟମୟ ଚିତ୍ର ଉପସ୍ଥାପିତ କରିଅଛନ୍ତି । ବର ବେଶରେ ବିଭୂଷିତ ଶିଶୁପାଳ ଯଥାସମୟରେ ବିଦର୍ଭ ନଗରରେ ପଦାର୍ପଣ କରିଅଛି ଏବଂ ଜରାସନ୍ଧପ୍ରମୁଖ ନରପତିମାନଙ୍କ ନିଦେଶକ୍ରମେ ଭୀଷ୍ମକନନ୍ଦନ ରୁକ୍ମଣ ରାଜୋଚିତ ଉପଚାରରେ ତାହାଙ୍କର ଅଭ୍ୟର୍ଥନା କରିଅଛି । ବୈଦିକ ବିଧାନାନୁଯାୟୀ ଏବଂ ଜ୍ୟୋତିଷୀମାନଙ୍କ ଗଣନାନୁକ୍ରମେ ବାନ୍ଧବରଣ ଠାରୁ ଆରମ୍ଭ କରି ଗନ୍ଧାଧିବାସ ପର୍ଯ୍ୟନ୍ତ ସକଳ ବୈବାହିକ କ୍ରିୟାର ସମାରମ୍ଭ ହେଲା । ଠିକ୍ ଏହି ସମୟରେ ଚର ମଗଧସମ୍ରାଟ ଜରାସନ୍ଧଙ୍କୁ ଶ୍ରୀକୃଷ୍ଣଙ୍କର ଆଗମନ ବାର୍ତ୍ତା ପ୍ରଦାନ କଲା । ବିବାହ ମଣ୍ଡପରେ ସମବେତ ବିଶାଳ ଜନତା ମଧ୍ୟରେ ଗୁହୁଁଗୁହୁଁ ମୁହୂର୍ତ୍ତିକ ଭିତରେ ଏ ସମ୍ବାଦ ପ୍ରଚାରିତ ହେଲା । ସମବେତ ନରନାରୀ ଏ ସମ୍ବାଦରେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବା ନିମିତ୍ତ ଏକମୁଖରେ ଧାବମାନ ହେଲେ । ତାଙ୍କର ନବନୀରଦ-

ବିକଶିତ ଅପଘନର ମଧୁମୟ ଲାବଣ୍ୟ ଦର୍ଶନରେ ମୁଗ୍ଧ ହୋଇ ସମସ୍ତେ ସମସ୍ୱରରେ ତାହାଙ୍କୁ ନବନୀତକୋମଳାଙ୍ଗୀ ରୂପସୀ ରୁକ୍ମିଣୀଙ୍କର ଉପଯୁକ୍ତ ପାତ୍ର ବୋଲି ସ୍ୱୀକାର କଲେ ଏବଂ ଶିଶୁପାଳଙ୍କୁ ଜାମାତା ରୂପେ ବରଣ କରିଥିବା ହେତୁ ଭୀଷ୍ମକଙ୍କ ଉଦ୍ଦେଶ୍ୟରେ ଅଜସ୍ର ନିନ୍ଦା ବର୍ଷଣ କଲେ । କଥାଭାଗର ଏହି ନିନ୍ଦାପ୍ରଶଂସାମୂଳକ ପରସ୍ପର ବିପରୀତ ଓ ବିରୁଦ୍ଧ-ଭାବାପନ୍ନ ଚରିତ୍ର ଅଙ୍କନ କରିବାକୁ ଯାଇ କବି ଏଠାରେ ଯେପରି ସରଳ ତରଳ ଭାଷାର ଭିତର ଦେଇ ସମବେତ ଜନତାର ଅନ୍ତର କଥା ଖୋଲିଦେଇ ଅଛନ୍ତି, ତାହା ତାହାଙ୍କ ସିଦ୍ଧହସ୍ତତାର ପରିଚାୟକ ଏବଂ ଅତୀବ ମନୋହର ଓ ହୃଦୟଗ୍ରାହୀ (୧୩—୧୬ ପଦ ଦ୍ରଷ୍ଟବ୍ୟ) ।

ବିଦର୍ଭ ନଗରର ନରନାରୀବୃନ୍ଦ ଯେତେବେଳେ କୃଷ୍ଣଙ୍କର ଏହି ରୂପମାଧୁରୀରେ ବିମୋହିତ ହୋଇ କେତେବେଳେ ବିଧାତା ଉଦ୍ଦେଶ୍ୟରେ, କେତେବେଳେ ରୁକ୍ମିଣୀଙ୍କ ଭ୍ରାତା ଉଦ୍ଦେଶ୍ୟରେ ଏବଂ କେତେବେଳେ ବା ରୁକ୍ମିଣୀଙ୍କ ଭାଗ୍ୟ ଉଦ୍ଦେଶ୍ୟରେ ନିନ୍ଦା ବର୍ଷଣ କରିବାରେ ବ୍ୟସ୍ତ, ସେତେବେଳେ ସମବେତ ରାଜନ୍ୟବର୍ଗ କୃଷ୍ଣଙ୍କୁ ଦେଖିବା ଦୂରେ ଥାଉ—ଆଗମନ ସମ୍ବାଦରେ ଭୀତସନ୍ତ୍ରସ୍ତ ଓ ସାହସ-ମ୍ଳାନ ହୋଇ ପଡ଼ିଲେ । ଜରାସନ୍ଧ ସେମାନଙ୍କର ନେତୃତ୍ୱ ଗ୍ରହଣ କରି ଅଭୟ ପ୍ରଦାନ କଲେ ଏବଂ ବିପଦର ଆଶଙ୍କା କରି ଶୀଘ୍ର ବିବାହ କ୍ରିୟା ସମାପନ ଉଦ୍ଦେଶ୍ୟରେ ଗନ୍ଧବାସ ଶେଷରେ କନ୍ୟାକୁ ଆଣିବା ଲାଗି ଆଦେଶ କଲେ । କୁଳପରଂପରାଗତ ପ୍ରଥା ଅନୁସାରେ ବର୍ତ୍ତମାନ କନ୍ୟାକୁ ଅମ୍ବିକା ମନ୍ଦିରକୁ ଅର୍ଘ୍ୟ ପ୍ରଦାନ ଉଦ୍ଦେଶ୍ୟରେ ଯିବାକୁ ହେବ । ସେଥିପାଇଁ ରୁକ୍ମିଣୀ ଗନ୍ଧଜଳରେ ସ୍ନାନ କରି ଏବଂ ନାନା ବିବିଧ ବେଶଭୂଷାରେ ସୁସଜ୍ଜିତା ହୋଇ ବନ୍ଧୁ

ସୈନ୍ୟସାମନ୍ତ ସହ ଦେବୀମନ୍ଦିର ଅଭିମୁଖରେ ଯାତ୍ରା କଲେ । ସେଠାରେ ପୁଷ୍ପଚନ୍ଦନରେ ଦେବୀଙ୍କର ଯଥୋଚିତ ଆରାଧନା କରି ଏବଂ କୃଷ୍ଣଙ୍କୁ ସ୍ୱାମୀ ରୂପେ ପାଇବା ପାଇଁ ଦେବୀଙ୍କ ଶ୍ରୀଚରଣରେ ବନ୍ଦି ମିନତି କରି ଯେତେବେଳେ ସେ ପ୍ରତ୍ୟାବର୍ତ୍ତନ କଲେ, ସେତେବେଳେ ପଥରୁ କୃଷ୍ଣ ତାହାଙ୍କୁ ହରଣ କରି ରଥରେ ବସାଇ ଦ୍ୱାରକା ଅଭିମୁଖରେ ପ୍ରସ୍ଥାନ କଲେ । ମୁହୂର୍ତ୍ତକ ମଧ୍ୟରେ ଏହି ରୁକ୍ମିଣୀ ହରଣ ସମ୍ବାଦ ବିଜୁଳି ବେଗରେ ଚତୁର୍ଦ୍ଦିଗରେ ପ୍ରଚାରିତ ହୋଇଗଲା । ଦର୍ଶକବୃନ୍ଦ ଏ ଘଟଣାରେ ବିଶେଷ ଆନନ୍ଦିତ ହେଲେ ଏବଂ ଶିଶୁପାଳ ଉଦ୍ଦେଶ୍ୟରେ ନିନ୍ଦା ବର୍ଷଣ କରି କହିଲେ—

"ବେଦୀର ଉପରେ ଥିଲ ବସିଛି କର୍ପୂର
ଚୂନ ଚୂନ ମୁଖେ ଲାଜ ଲାଗୁଛି କି ନାହିଁ
ବୋଲୁଥିଲ ଅମ୍ଭେ ବଡ଼ ରଜା ବଳୀୟାର
କୋଳୁ ନେଇ ଯାଉଛନ୍ତି ଜନନ୍ତେ ଏହାର । ୪୭ ।"

ଏଣେ ଜରାସନ୍ଧପ୍ରମୁଖ କୃଷ୍ଣଦ୍ୱେଷୀ ଦୁଷ୍ଟ ନରପତିବୃନ୍ଦ ସଦଳବଳ ଯୁଦ୍ଧାର୍ଥ କୃଷ୍ଣଙ୍କର ଅନୁଧାବନ କଲେ, କିନ୍ତୁ ଅଳ୍ପଦୂରରେ ବଳରାମ ସେମାନଙ୍କୁ ପଥରୁଦ୍ଧ କଲେ । ଏ ସମ୍ବାଦରେ ରୁକ୍ମୀ କ୍ରୋଧରେ ଅନ୍ଧ ହୋଇ ଅଗ୍ରସର ହେଲା ଏବଂ ଭଗିନୀ ରୁକ୍ମିଣୀର ଉଦ୍ଧାର ସାଧନ କରି ନ ପାରିଲେ ଆଉ ବିଦର୍ଭକୁ ପ୍ରତ୍ୟାବର୍ତ୍ତନ କରିବ ନାହିଁ ବୋଲି ପ୍ରତିଜ୍ଞା କଲା । କିନ୍ତୁ ଦୁଃଖର କଥା, ରୁକ୍ମୀ ତାହାର ଏ ବୀରଜନୋଚିତ ଭୀଷଣ ପ୍ରତିଜ୍ଞା ପୂରଣ କରି ପାରିଲା ନାହିଁ; କୃଷ୍ଣ ତାହାକୁ ଯୁଦ୍ଧରେ ପରାସ୍ତ କରି ତାହାର କେଶକୁ ସାତଭାଗ କରି ରଥର ସ୍ତମ୍ଭରେ ବନ୍ଧନ କଲେ । ଏହିପରି ସମଯୁଦ୍ଧରେ ବଳରାମ ଜରାସନ୍ଧ ପ୍ରଭୃତି କୃଷ୍ଣାନୁଗାମୀ ରାଜାମାନଙ୍କୁ ପରାଭବ ଦେଇ

ସେଠାରେ ଉପସ୍ଥିତ ହେଲେ ଏବଂ ରୁକ୍ମଣର ବନ୍ଧନ ଦେଖି କୃଷ୍ଣଙ୍କୁ ଭର୍ତ୍ସନା କରି ରୁକ୍ମଣୀଙ୍କି ସାନ୍ତ୍ୱନା ଦେଇ ତାହାର ବନ୍ଧନ ଫିଟାଇ ଦେଲେ। ରୁକ୍ମଣ ସେଠାରୁ ଲାଜ ଓ ଅପମାନରେ ଫେରି ଭୋଜକଟକ ନାମକ ଏକ ନୂତନ ନଗର ନିର୍ମାଣ କରି ସେଠାରେ ଅବସ୍ଥାନ କଲା । ତେଣେ ରାମକୃଷ୍ଣ ଉଭୟେ ରୁକ୍ମଣୀଙ୍କ ସହ ଯଥାସମୟରେ ଦ୍ୱାରକାରେ ଉପସ୍ଥିତ ହେଲେ । ରାଜା ଉଗ୍ରସେନ ଓ ନଗରର ଅନ୍ୟାନ୍ୟ ନରନାରୀଗଣ କୃଷ୍ଣଙ୍କର ପ୍ରତ୍ୟାଗମନରେ ଆନନ୍ଦିତ ହୋଇ ସମବେତ ହେଲେ । ଏଠାରେ କବି କାର୍ତ୍ତିକ ନୈଷଧକାରଙ୍କ ପଦାଙ୍କ ଅନୁସରଣ କରି ସେମାନଙ୍କ ମୁଖରେ ଯେପରି ଭାବରେ ରୁକ୍ମଣୀଙ୍କ ରୂପମାଧୁରୀ ବର୍ଣ୍ଣନା କରିଅଛନ୍ତି ତାହା ତାଙ୍କ କଳାଜ୍ଞାନର ପରିଚୟ ପ୍ରଦାନ କରେ ।

"କେ ବୋଲଇ ଦେଖ ଗୋ କନ୍ୟାର ରୂପଗୁଣ
କେଉଁ ଦେହ ଗଢିଲାକ ଏହା ବ୍ରହ୍ମମେଣ । ୪୮ ।"

× ×

× ×

ମଦାର ବ୍ରହ୍ମ କରତଳର ଅରୁଣ
ମୂର୍ତ୍ତିବନ୍ତ ହୋଇଛ ମଦନ ଫୁଲବାଣ । ୫୧ ।

ଏହିପରି ଭାବରେ କବି ରୁକ୍ମଣୀଙ୍କର ଅଙ୍ଗସୌଷ୍ଠବ ବର୍ଣ୍ଣନା କରି ତାହାଙ୍କୁ ବସୁଦେବ ଓ ଦେବକୀଙ୍କ ନିକଟରେ ପ୍ରଣତ କରାଇ ଅଛନ୍ତି ଏବଂ ଶାସ୍ତ୍ରାନୁମୋଦିତ ବିଧିରେ ବିବାହ କ୍ରିୟାର ସୂଚନା ମାତ୍ର କରି ଛାନ୍ଦଟିର ସମାପ୍ତି ସୂଚନା କରିଅଛନ୍ତି ।

ଏ ପ୍ରସଙ୍ଗରେ ପଦ୍ମପୁରାଣର ବର୍ଣ୍ଣନା ଅତି ସଂକ୍ଷିପ୍ତ ଏବଂ କବି କାର୍ତ୍ତିକଙ୍କର ବର୍ଣ୍ଣନା ଅପେକ୍ଷାକୃତ ବିସ୍ତୃତ ହୋଇଥିବାରୁ ଉଭୟ

କଥାଚୟରେ ପାର୍ଥକ୍ୟ ଦେଖାଯିବା ସ୍ୱାଭାବିକ । ପୁରାଣକାର ଯେଉଁ-ଠାରେ ନୀରବ, ଆମ୍ଭମାନଙ୍କର କବି ସେଠାରେ ଠିକ୍ ବିପରୀତ ଆଚରଣ କରି ଆଶାନୁରୂପ ଭାବରେ ତାଙ୍କର କଳାନୈପୁଣ୍ୟ ଦେଖାଇ ଅଛନ୍ତି । ଭାଗବତର ବର୍ଣ୍ଣନା ପାଠ କଲେ ଜଣାଯାଏ ଯେ, ଏ ପ୍ରସଙ୍ଗର ବର୍ଣ୍ଣନାରେ କବି ଅନେକ ପରିମାଣରେ ତଦ୍ଦ୍ୱାରା ପ୍ରଭାବିତ ହୋଇଅଛନ୍ତି । କୃଷ୍ଣଙ୍କ ଦର୍ଶନରେ ବିଦର୍ଭ-ଅଧିବାସୀମାନଙ୍କର ଅନୁଶୋଚନା ଏବଂ ଭୀଷ୍ମକ ଓ ରୁକ୍ମଣଙ୍କ ପ୍ରତି ନିନ୍ଦା ଭାଗବତରେ କେବଳ ମାତ୍ର ସୂଚିତ ହୋଇଅଛି । କବି କାର୍ତ୍ତିକ ସେହି ସୂଚନାର କଳେବରକୁ ବିସ୍ତାରିତ କରି ନିଜର ସ୍ୱଭାବସୁଲଭ ଶୈଳୀରେ କଳାପାଣ୍ଡିତ୍ୟ ପ୍ରଦର୍ଶନ କରିଅଛନ୍ତି । ଅର୍ଘ୍ୟଦାନ ପାଇଁ ରୁକ୍ମଣୀ ଅନ୍ତଃପୁରରୁ ଅମ୍ବିକା ମନ୍ଦିରକୁ ଯାତ୍ରା କଲାବେଳେ ତାହାର ଯେଉଁ ବେଶଭୂଷାର ବର୍ଣ୍ଣନା ଭାଗବତକାର ପ୍ରଦାନ କରିଅଛନ୍ତି, କବି କାର୍ତ୍ତିକ ତାହାର ଅନୁକରଣ କରି ନାହାନ୍ତି ସତ୍ୟ, କିନ୍ତୁ ତାହାର ପ୍ରଭାବରେ ପ୍ରଭାବିତ ହୋଇ ନିଜର ମୌଳିକତାକୁ ଫୁଟାଇ ଅଛନ୍ତି । ଭଗିନୀର ଉଦ୍ଧାର ସାଧନ ପାଇଁ ରୁକ୍ମଣର ଭୀଷଣ ପ୍ରତିଜ୍ଞା ପଦ୍ମ-ପୁରାଣରେ ବର୍ଣ୍ଣିତ ହୋଇ ନ ଥିଲେହେଁ ଭାଗବତରେ ତାହାର ବର୍ଣ୍ଣନା ଦେଖିବାକୁ ମିଳେ । କୃଷ୍ଣ ଓ ରୁକ୍ମଣଙ୍କ ଯୁଦ୍ଧ ପ୍ରସଙ୍ଗରେ ପଦ୍ମପୁରାଣକାର ରୁକ୍ମଣର ପରାଜୟ ବର୍ଣ୍ଣନ କରିବା ସଙ୍ଗେ ସଙ୍ଗେ ତାହାକୁ କୃଷ୍ଣଙ୍କ ହସ୍ତରେ ବନ୍ଦୀ କରାଇ ଶିର ମୁଣ୍ଡନର ବ୍ୟବସ୍ଥା କରିଅଛନ୍ତି । ଯଥା—

ତତଃ ସ ନିର୍ମିତୋଦ୍ୟମ୍ୟ ଦୃଷ୍ଟଂ ବକ୍ଷସ୍ୟତାଡ଼ୟତ୍
ତଂ ନିପାତ୍ୟ ରଣେ ବୀରଂ ନିବଧ୍ୟ ନିବିଡଂ ହରିଃ । ୪୦ ।
ଚକ୍ରଂ କ୍ଷୁରପ୍ରମାଦାୟ ପ୍ରହସନ୍ ମଧୁସୂଦନଃ

ଶିରସୋମୂଣ୍ଡନଂ କୃତ୍ୱା ମୁମୋଚ ଚ ଜନାର୍ଦ୍ଦନଃ । ୪୧ ।
ସ ତୁ ଶୋକସମାବସ୍ଥୋ ନିଃଶ୍ୱସନ୍ନୁରଗୋ ଯଥା
ଅବବେଶ ପୁରଂ ସ୍ୱୀୟଂ ସତୁ ଗର୍ଚ୍ଚୈବ ଗ୍ରବସତ୍ । ୪୨ ।

ଭାଗବତକାରଙ୍କ ବର୍ଣ୍ଣନା ମଧ୍ୟ ଏହ୍ୱାର ଅନୁରୂପ କହିଲେ ଚଳେ । ତେବେ ପାର୍ଥକ୍ୟ ଭିତରେ ଏତିକ ଯେ, ରୁକ୍ମିଣୀଙ୍କ ଅନୁରୋଧ ଶ୍ରବଣରେ ଦୟା ପରବଶ ହୋଇ କୃଷ୍ଣ ରୁକ୍ମିଣର ପ୍ରାଣ ସଂହାର କଲେ ନାହିଁ, କନ୍ତୁ ଶ୍ମଶ୍ରୁ ଓ କେଶ ସ୍ଥାନେ ସ୍ଥାନେ କଞ୍ଚିତ୍ ଅବଶିଷ୍ଟ ରଖି ମୁଣ୍ଡନ କରଦେଲେ । ଏହିପରି ଭାବରେ ପରାଜିତ ଓ ଅପମାନିତ ହୋଇ ରୁକ୍ମି ବନ୍ଦୀରୂପେ କୃଷ୍ଣଙ୍କ ସମୀପରେ ଅବସ୍ଥାନ କଲେ । ଏହାର ଅବ୍ୟବହିତ ପରେ ବଳରାମ ଶତ୍ରୁସେନା ଧ୍ୱସ୍ତ ବିଧ୍ୱସ୍ତ କରି ସେଠାରେ ଉପସ୍ଥିତ ହେଲେ ଓ ରୁକ୍ମିଣର ଶୋଚନୀୟ ଅବସ୍ଥା ଦେଖି କୃଷ୍ଣଙ୍କୁ ନିନ୍ଦା ଓ ରୁକ୍ମିଣୀଙ୍କୁ ସାନ୍ତ୍ୱନା ଦେଇ ତାହାଙ୍କୁ ମୁକ୍ତ କଲେ । ମୁକ୍ତି ପାଇ ସେ ଆଉ ବିଦର୍ଭ ରାଜଧାନୀରେ ମୁଖ ନ ଦେଖାଇ ଭୋଜ-କଟକ ନାମକ ସ୍ଥାନରେ ଅବସ୍ଥାନ କଲେ । କବି କାର୍ତ୍ତିକ ଏହି ପ୍ରସଙ୍ଗର ବର୍ଣ୍ଣନାରେ ଭାଗବତକାରଙ୍କ ପଦାଙ୍କ ଅନୁସରଣ କରି-ଥିବାର ସ୍ପଷ୍ଟ ପ୍ରତୀତ ହୁଏ ।

ଅଷ୍ଟମ ଛାନ୍ଦରେ କବି କୃଷ୍ଣ ଓ ରୁକ୍ମିଣୀଙ୍କ ବିବାହ ବର୍ଣ୍ଣନାର ସୂତ୍ରପାତ କରି ବିବାହ-ମଣ୍ଡପର ନିର୍ମାଣ ଭାର ସୁରଶିଳ୍ପୀ ବିଶ୍ୱକର୍ମାଙ୍କ ହସ୍ତରେ ପ୍ରଦାନ କରିଅଛନ୍ତି ଏବଂ ବିବାହ ଉତ୍ସବରେ ଯୋଗ ଦେବା ନିମିତ୍ତ ତ୍ରିଭୁବନର ମୁନିଋଷିମାନଙ୍କୁ ତଥା ଗୋପପୁରର ନନ୍ଦ ଯଶୋଦା ଓ ଗୋପୀ ଗୋପାଳମାନଙ୍କୁ ନିମନ୍ତ୍ରିତ କରାଇ ଏକତ୍ରିତ କରିଅଛନ୍ତି । ଏହି ବିବାହ-ମଣ୍ଡପର ବର୍ଣ୍ଣନାରେ କବି ଯେ ଧରଣର କାଳ୍ପନିକ ଅଳ-ଙ୍କାରର ଆରୋପ କରିଅଛନ୍ତି, ତାହା ଭଗବାନ କୃଷ୍ଣଙ୍କ ବିବା-

ହୋତ୍ସବ ବର୍ଣ୍ଣନାର ଉପଯୁକ୍ତ ବୋଲି ମନେ ହୁଏ । (୧୪—୨୨ ପଦ ଦ୍ରଷ୍ଟବ୍ୟ) କୋଟି କୋଟି ଦର୍ଶକଙ୍କର ସମାବେଶ ପାଇଁ ଏ ପ୍ରକାରର ବିରାଟ ବିବାହସଭା ଯେ ପ୍ରୟୋଜନ ଏବଂ ବିଶ୍ୱକର୍ମାଙ୍କ ସ୍ୱହସ୍ତରେ ନିର୍ମିତ ହୋଇଥିବାରୁ ତାହାର ଅସାଧାରଣତା ଯେ ଅବିସମ୍ବାଦିତ— ଏଥିରେ କୌଣସି ସନ୍ଦେହ ନାହିଁ । ମର୍ତ୍ତ୍ୟଲୋକର ନରପତିବୃନ୍ଦ ସେ ସଭାରେ ଆସନ ପାଇ ନିଜ ନିଜକୁ କୃତାର୍ଥ ମନେ କଲେ । ଉଦ୍ଧବଙ୍କଠାରୁ ନିମନ୍ତ୍ରଣ ପାଇଁ ନନ୍ଦ ଯଶୋଦା ଓ ଗୋପୀଗୋପାଳ-ମାନେ ମହା ଆନନ୍ଦରେ ଶକଟ ଓ ରଥାଦିରେ ବୈବାହିକ ସମ୍ଭାର ସହ ଦ୍ୱାରକାରେ ଉପସ୍ଥିତ ହେଲେ । ପ୍ରାଣଠାରୁ ବଳି ପ୍ରିୟତମ ଗୁଣମଣି ପୁତ୍ରକୁ ବହୁଦିନ ପରେ ଦର୍ଶନ କରି ପୁତ୍ରବତ୍ସଳା ଜନନୀ ଯଶୋଦା ଆନନ୍ଦରେ ଅନ୍ଧ ହୋଇ ଗଲେ ଏବଂ ପୁତ୍ର-ବତ୍ସଳତାର ନିଦର୍ଶନ ସ୍ୱରୂପ ତାଙ୍କ ସ୍ତନରୁ କ୍ଷୀରସ୍ରାବ ହେବାକୁ ଲାଗିଲା । ପିତା ନନ୍ଦ ବହୁଦିନର ଅଦର୍ଶନ ପରେ ରାମକୃଷ୍ଣଙ୍କୁ ଦେଖି ପ୍ରାଣରେ ଯେଉଁ ଆନନ୍ଦ ଲାଭ କଲେ, ତାହା ଅକଥନୀୟ । ବାଲ୍ୟବନ୍ଧୁ ଦାମ, ସୁଦାମ, ପ୍ରଭୃତିଙ୍କୁ ଦେଖି କୃଷ୍ଣ ପରମ ପ୍ରୀତି ଅନୁଭବ କଲେ । ବସୁଦେବ ଓ ଦେବକୀଙ୍କ ସଙ୍ଗେ ନନ୍ଦ ଓ ଯଶୋଦାଙ୍କ ମଧୁର ସମ୍ଭାଷଣରେ ଆନନ୍ଦ-ସିନ୍ଧୁ ସତେ ଯେପରି ଉଚ୍ଛୁଳି ଉଠିଲା ! ବିବାହ ଉତ୍ସବରେ ଯୋଗ ଦେବା ଅଭିପ୍ରାୟରେ ବିଦର୍ଭନୃପତି ଭୀଷ୍ମକଙ୍କୁ କନ୍ୟାର ପାଣିଗ୍ରହଣ ପାଇଁ ନିରୂପିତ ଦିବସ ଦୂତ ମୁଖରେ ଜଣାଇ ଦିଆଯାଇ-ଥିଲା । ସମ୍ବାଦ ଅବଗତ ହେଲାକ୍ଷଣି ସେ ମଧ୍ୟ ପାତ୍ର ମନ୍ତ୍ରୀ ଓ ପୁରୋହିତାଦିଙ୍କ ସହିତ ଦ୍ୱାରକାରେ ଉପନୀତ ହେଲେ । ଅକ୍ରୂରଙ୍କ ଦ୍ୱାରା ଅଭ୍ୟର୍ଥିତ ହୋଇ ସେ ଯଥାସମୟରେ ରାଜା ଉଗ୍ରସେନ ଓ

ବସୁଦେବଙ୍କର ସାହଚର୍ଯ୍ୟ ଲାଭ କଲେ । ପର ଦିବସ ବିବାହୋତ୍ସବର ସୂଚନା କରି କବି ଏହିଠାରେ ଅଷ୍ଟମ ଛାନ୍ଦର ଉପସଂହାର କରିଅଛନ୍ତି ।

ମୂଳ ପଦ୍ମପୁରାଣରେ ଏହି ବିବାହ ଉତ୍ସବର ବର୍ଣ୍ଣନା ଦେଖାଯାଏ । ଭାଗବତକାର ଏ ପ୍ରସଙ୍ଗରେ ଅଧିକଦୂର ଅଗ୍ରସର ନ ହୋଇ କେବଳ ଦ୍ୱାରକାରେ କୃଷ୍ଣ ଓ ରୁକ୍ମିଣୀଙ୍କର ଯଥାବିଧି ବିବାହ ହୋଇଥିବାର ଉଲ୍ଲେଖ କରି ନୀରବତା ଅବଲମ୍ବନ କରିଅଛନ୍ତି । ପଦ୍ମପୁରାଣର ବର୍ଣ୍ଣନାରୁ ମିଳେ ଯେ, ଏହି ବିବାହରେ ଦେବତାମାନେ ଦେବବାଦ୍ୟ ବଜାଇ ସ୍ୱର୍ଗଲୋକରୁ ନବଦମ୍ପତୀଙ୍କ ଶିରରେ ପୁଷ୍ପ ବର୍ଷଣ କରିଥିଲେ । ବସୁଦେବ ଉଗ୍ରସେନ ଓ ଅକ୍ରୂର ପ୍ରମୁଖ ଯଦୁବଂଶୀୟଗଣ, ନନ୍ଦ ଯଶୋଦା ପ୍ରଭୃତି ଗୋପୀଗୋପାଳଗଣ ଏବଂ ଦେବକୀ, ରେବତୀ ଓ ରୋହିଣୀ ପ୍ରମୁଖ ପୁରନାରୀବୃନ୍ଦ ଏହି ବିବାହ କ୍ରିୟାରେ ଯୋଗ ଦେଇଥିଲେ । କବି କାର୍ତ୍ତିକ ପଦ୍ମପୁରାଣର ଏହି ବର୍ଣ୍ଣନାକୁ ଟିକିଏ ଅଧିକତର ପଲ୍ଲବିତ କରିଅଛନ୍ତି ଏବଂ ସଭାମଣ୍ଡପ ବିଶ୍ୱଶିଳ୍ପୀଙ୍କ ହସ୍ତରେ ନିର୍ମିତ କରାଇ ପୁରାଣକାରଙ୍କୁ ବଳି ଯାଇଅଛନ୍ତି । ଏତଦ୍ୱାରା କଥାବସ୍ତୁର କୌଣସି ପ୍ରକାର ଅଙ୍ଗହାନି ହୋଇ ନାହିଁ, ପରନ୍ତୁ ସାଧାରଣ ପାଠକମାନଙ୍କର ମନୋରଞ୍ଜନ ହୋଇ ପାରିଛି ।

ନବମ ଛାନ୍ଦରେ କବି ପୂର୍ବ ଛାନ୍ଦରେ ସୂଚିତ ହୋଇଥିବା ବିବାହ ଉତ୍ସବର ବର୍ଣ୍ଣନା କରିଅଛନ୍ତି । ଏହି ବର୍ଣ୍ଣନାର ପ୍ରତିପଂକ୍ତିରେ ଦେଶ ପ୍ରଚଳିତ ଲୌକିକ ଆଚାର ବ୍ୟବହାର ଓ ପ୍ରଥା ଫୁଟି ଉଠିଥିବାର ଦେଖାଯାଏ । ଏହି ବର୍ଣ୍ଣନା ଭିତରେ କବି ସ୍ଥଳେ ସ୍ଥଳେ ନିଜ ଶକ୍ତିର ସୁନ୍ଦର ନିଦର୍ଶନ ପ୍ରଦାନ କରି କାବ୍ୟର ଅଙ୍ଗସୌଷ୍ଠବ ବୃଦ୍ଧି କରିଅଛନ୍ତି । ଦେବକୀ ଶ୍ରୀକୃଷ୍ଣଙ୍କର ଜନନୀ ହେଲେହେଁ କେବଳ ଜାତକର୍ମ ବ୍ୟତୀତ ଅନ୍ୟାନ୍ୟ ସକଳ ବିଷୟରେ ଯଶୋଦା ତାଙ୍କର

ଜନନୀକଲ୍ପ ଅଟନ୍ତି । ତେଣୁ କଲାନପୁଣ କବି ଶ୍ରୀକୃଷ୍ଣଙ୍କ ମଙ୍ଗଳ-ବନ୍ଧ କାଳରେ ଦେବକୀଙ୍କ ମୁଖରେ ନିମ୍ନଲିଖିତ ଉକ୍ତିଟି ପ୍ରକାଶିତ କରିଅଛନ୍ତି—

"ଦେବକୀ ବୋଲନ୍ତି ଯଶୋବତୀ ମୁଖ ଚାହିଁ
ପୁତ୍ରକୁ ଭୂଷିର ଗୋ ମଙ୍ଗଳ କରି ଯାଇ । ୨୪ ।

ଦେବକୀ ବଚନ ଶୁଣି ବୋଲେ ନନ୍ଦରାଣୀ
ତ୍ରିଭୁବନେ ତୁମ୍ଭେ ଭାଗ୍ୟବତୀ ଶିରୋମଣି । ୨୭ ।"

ଚତୁର କବି ଏଠାରେ ଯଶୋଦା ଓ ଦେବକୀଙ୍କ ମୁଖରେ ପରସ୍ପରର ପ୍ରଶଂସା କରିଅଛନ୍ତି ଏବଂ ମଙ୍ଗଳବନ୍ଧ ପାଇଁ ଉଭୟଙ୍କ ହସ୍ତରେ ଦୂର୍ବାକ୍ଷତ ଦେଇ କାର୍ଯ୍ୟୋଦ୍ଧାର କରିଅଛନ୍ତି । କବିଙ୍କର ଏହି ବର୍ଣ୍ଣନାଭଙ୍ଗୀ ବା ଚିତ୍ରଣକୌଶଳ ଅଲଙ୍କାସିନ୍ଦୂର ବେଳେ ଅଧିକତର ହୃଦୟଗ୍ରାହୀ ହୋଇଅଛି । ପୁରୋହିତ ଓ ଗାରବ . ଅଲଙ୍କା-ସିନ୍ଦୂର ପାଇଁ ବରଜଜନନୀଙ୍କୁ ଆହ୍ୱାନ କଲାବେଳେ କବି ଦେବକୀଙ୍କ ମୁଖରେ ଯେଉଁ ହୃଦୟସ୍ପର୍ଶୀ ଉକ୍ତି ପ୍ରକାଶ କରିଅଛନ୍ତି, ତାହା ନିମ୍ନରେ ଉଦ୍ଧୃତ ହେଲା—

"ଯଶୋଦାକୁ ଚାହିଁଣ ଦେବକୀ ହସ ହସ
ଭୂଷିର ପୁତ୍ରକୁ କର ଅଲଙ୍କା ପ୍ରବେଶ
ପୁତ୍ରକୁ କୋଡରେ ଧରି ନ ଜାଣିବି ମୁହିଁ
କେମନ୍ତ କରଣ ସ୍ତନ କ୍ଷୀରପାନ ଦେଇ
ରୁଷିବା ହସିବା ଭଙ୍ଗି ଭବ ମୁଁ ନ ଜାଣି
କେମନ୍ତେ ବୋଲିବି ମୋର ପୁତ୍ର ଚକ୍ରପାଣି
ପୁତ୍ରଙ୍କ ଠାବରେ ଯେତେ ତୁମ୍ଭେ ଭବମତ
ସକଳହିଁ ଜାଣ ତୁମ୍ଭେ କରଗତ ବଦତ ।"

ଏହି ବର୍ଣ୍ଣନାରେ କବି ଦେବକୀଙ୍କ ହୃଦୟରୁ 'କୃଷ୍ଣ ମୋର ପୁତ୍ର'—ଏହି ଅହମିକାକୁ ଦୂର କରିଦେଇ ଅଛନ୍ତି । ଶ୍ରୀକୃଷ୍ଣଙ୍କ ଭକ୍ତ

ତ୍ରିଭୁବନନାଥ ସନ୍ତାନଙ୍କୁ ଯେ ଉଦରରେ ଧାରଣ କରିପାରେ, ତା ପକ୍ଷରେ ଏପରି ହୀନତାପୂର୍ଣ୍ଣ ଉକ୍ତିନିତାନ୍ତ ସ୍ୱାଭାବିକ ବୋଲି ମନେ ହୁଏ । ଯେ ଯାହାହେଉ, ଚତୁରକବି ଏହିପରି କେବଳ ଯେ ଦେବକୀଙ୍କ ସୁଶୀଳତା ଓ ଯଶୋଦାଙ୍କ ପ୍ରଶସ୍ତି ଗାନ କରି ନିଜର କର୍ତ୍ତବ୍ୟ ଶେଷ କରିଅଛନ୍ତି ତାହା ନୁହେ, ପରନ୍ତୁ ଯଶୋଦାଙ୍କ ମୁଖରେ ଶ୍ରୀକୃଷ୍ଣଙ୍କୁ ଗର୍ଭରେ ଧାରଣ କରିଥିବା ହେତୁ ଦେବକୀଙ୍କର ଅପାର ଭାଗ୍ୟ ଓ ମହିମାର କଥା ପ୍ରକାଶ କରାଇ ଉଭୟଙ୍କ ହାତରେ ଅଳତାସିନ୍ଦୂର କ୍ରିୟା ସମାପନ କରିଅଛନ୍ତି ।

ବିବାହ ଶେଷରେ ନାୟକ ନାୟିକାଙ୍କ ପ୍ରାଥମିକ ମିଳନ ପାଇଁ ମଧୁଶଯ୍ୟାର ବର୍ଣ୍ଣନା କବିମାନେ ସାଧାରଣତଃ କରିଥାନ୍ତି ଏବଂ ଅଙ୍ଗସୌଷ୍ଠବ ବୃଦ୍ଧି ତଥା ନାୟକର ମନୋରଞ୍ଜନ ନିମିତ୍ତ ନାୟିକାକୁ ବିଚିତ୍ର ବେଶଭୂଷାରେ ସୁସଜ୍ଜିତ କରିଥାନ୍ତି । ଏ ସ୍ଥଳରେ କବି କାର୍ତ୍ତିକ ସେହି ଚିରାଚରିତ ପ୍ରଥାନୁଯାୟୀ ସହଚରୀମାନଙ୍କୁ ରୁକ୍ମିଣୀଙ୍କ ବେଶବିନ୍ୟାସରେ ନିୟୋଜିତ କରିଅଛନ୍ତି । କଥାଚିହ୍ନରେ ଏହି ଅଂଶରେ କବି ଉତ୍କଳର କାନ୍ତକବି ଜୟଦେବଙ୍କ ଗୀତଗୋବିନ୍ଦର ପ୍ରଭାବରେ ପ୍ରଭାବିତ ହୋଇଥିବାର ଜଣାଯାଏ ।

ଏହି ମଧୁଶଯ୍ୟାର ବର୍ଣ୍ଣନା ପରେ କବି ନାୟକନାୟିକାଙ୍କୁ ପ୍ରେମର ମୋହନ ମନ୍ତ୍ରରେ ମିଳାଇ ଦେଇ—ଦୁଇଟି ହୃଦୟକୁ ଏକତାର ମୋହରେ ଜଡ଼ିତ କରି ନବମ ଛାନ୍ଦ ଶେଷ କରି ଅଛନ୍ତି । ପଦ୍ମପୁରାଣ କିମ୍ବା ଭାଗବତରେ ବିବାହ ଉତ୍ସବର ଏପରି ହୃଦୟସ୍ପର୍ଶୀ ବର୍ଣ୍ଣନା ଦେଖିବାକୁ ମିଳେନା । ତେଣୁ ଏ ଧରଣର ବର୍ଣ୍ଣନା ଯେ ପୂର୍ଣ୍ଣଭାବରେ କବିଙ୍କ କଳ୍ପନାପ୍ରସୂତ, ସେଥିରେ କୌଣସି ସନ୍ଦେହ ନାହିଁ । କବିଙ୍କର ଏତାଦୃଶ କାଳ୍ପନିକତାରେ

କାବ୍ୟର ସୌଷ୍ଠବ ଓ ମହତ୍ତ୍ୱ ବର୍ଦ୍ଧିତ ହୋଇଅଛି ବୋଲି ନିର୍ବି-ବାଦରେ କୁହାଯାଇପାରେ ।

ବିବାହ ଉତ୍ସବରେ ଯୋଗ ଦେବାପାଇଁ ଯେଉଁ ରାଜନ୍ୟବର୍ଗ ନିମନ୍ତ୍ରିତ ହୋଇ ଆସିଥିଲେ, ସେମାନଙ୍କ ସମ୍ବନ୍ଧରେ ପଦେଅଧେ ନ କହି କାବ୍ୟର ଉପସଂହାର କରିବା ଅନୁଚିତ ମନେ କରି କବି ଦଶମ ଛାନ୍ଦର ଅବତାରଣା କରିଅଛନ୍ତି । ରାତ୍ରି ପ୍ରଭାତରେ ପରିଣତ ହୁଅନ୍ତେ ଯଦୁକୁଳନାଥ କୃଷ୍ଣଚନ୍ଦ୍ର ନିତ୍ୟକର୍ମମାନ ସାରି ରତ୍ନସିଂହାସନରେ ଆସୀନ ହେଲେ ଏବଂ ନିମନ୍ତ୍ରିତ ନୃପତିବୃନ୍ଦ ସେଠାରେ ତାହାଙ୍କର ଦର୍ଶନ କରି ନିଜ ନିଜ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିବାର ବାସନା ପ୍ରକାଶ କଲେ । ତଦନନ୍ତର କୃଷ୍ଣଚନ୍ଦ୍ର ଉଗ୍ର-ସେନଙ୍କ ପରାମର୍ଶ ଅନୁସାରେ ସେମାନଙ୍କୁ ଯଥୋଚିତ ଅଭ୍ୟର୍ଥନା ଓ ସତ୍କାର କରି ବହୁମୂଲ୍ୟ ଉପଢୌକନ ସହ ବିଦାୟ ଦେଲେ । ବିଦର୍ଭରାଜ ଭୀଷ୍ମକ ବିଦାୟ ଗ୍ରହଣ କରିବା ସମୟର ଉକ୍ତିରେ ତାହାଙ୍କର କନ୍ୟା-ବିଚ୍ଛେଦ-ଜନିତ ଦୁଃଖ ଏବଂ ଦୀନତା ପରିସ୍ଫୁଟ ହୋଇଅଛି ।

ନନ୍ଦଯଶୋଦାପ୍ରମୁଖ ଗୋପୀଗୋପାଳଗଣ କୃଷ୍ଣଙ୍କର ସ୍ନେହାତି-ଶଯ୍ୟ ଏଡ଼ି ନ ପାରି କେତେକଦିନ ଦ୍ୱାରକାରେ ଅବସ୍ଥାନ କଲେ । ସେହି କେତେକ ଦିନ କୃଷ୍ଣ, ଦାମ ସୁଦାମ ପ୍ରଭୃତି ଅନ୍ତରଙ୍ଗ ସଖା ଓ ଗୋପାଳମାନଙ୍କ ସଙ୍ଗେ ବିବିଧ କ୍ରୀଡ଼ା କୌତୁକରେ ଏବଂ ଜନନୀ ଯଶୋଦାଙ୍କ ସଙ୍ଗେ ବାତ୍ସଲ୍ୟ ଭାବରେ ଅତିବାହିତ କଲେ । ଏହିପରି କିଛିଦିନ ଭାବରେ ଅତୀତ ହୁଅନ୍ତେ ଗୋପୀଗୋପାଳମାନଙ୍କ ମନରେ ବୃନ୍ଦାବନର ଗୋଧନ ଚିନ୍ତା ଉପସ୍ଥିତ ହେଲା । ତହୁଁ ସେମାନେ ଦ୍ୱାରା-ବତୀରୁ ପ୍ରତ୍ୟାବର୍ତ୍ତନ କରିବାପାଇଁ ଶ୍ରୀକୃଷ୍ଣଙ୍କୁ ନିବେଦନ କଲେ ।

ଯଥାକାଳରେ ବିବିଧ ଉପହାର ସହ ସେମାନେ ବିଦାୟ ନେଇ ବୃନ୍ଦାବନକୁ ପ୍ରସ୍ଥାନ କଲେ । ତେଣେ କୃଷ୍ଣ ରୁକ୍ମିଣୀଙ୍କ ସଙ୍ଗେ ନାନା ବିହାର ବିଳାସରେ ପରମ ସୁଖରେ ଅବସ୍ଥାନ କଲେ । ଏହିଠାରେ କବି ଜଗନ୍ନାଥଙ୍କନାମୋଚ୍ଚାରଣ କରି ଏବଂ ପଦ୍ମପୁରାଣରୁ ଏହି ବର୍ଣ୍ଣନୀୟ ବିଷୟବସ୍ତୁ ଗ୍ରହଣ କରିଅଛନ୍ତି ବୋଲି ସ୍ୱୀକାର କରି କାବ୍ୟଟିର ଶେଷ ଯବନିକା ପକାଇଅଛନ୍ତି । କି ପଦ୍ମପୁରାଣ, କି ଭାଗବତ ଉଭୟ ଗ୍ରନ୍ଥରେ ନିମନ୍ତ୍ରିତ ରାଜନ୍ୟମଣ୍ଡଳୀ ଓ ଗୋପୀଗୋପାଳମାନଙ୍କର ବିଦାୟ ବର୍ଣ୍ଣନା ଏପରି ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇ ନାହିଁ । ଭାଗବତକାର ଏ ପ୍ରସଙ୍ଗରେ ପୂର୍ଣ୍ଣ ନୀରବତା ଦେଖାଇଥିଲେହେଁ ପଦ୍ମପୁରାଣକାର ସାମାନ୍ୟ ସୂଚନା ମାତ୍ର କରିଅଛନ୍ତି । ପୁରାଣକାରଙ୍କ ସେହି ସୂଚନାରେ କବି କାର୍ତ୍ତିକ ନିଜର କଳ୍ପନା ମିଶାଇ ଉପସଂହାରଟିକୁ ଯେ ଆଶାନୁରୂପ ଚିତ୍ତାକର୍ଷକ କରିପାରି ଅଛନ୍ତି—ଏହା ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କରିବେ ।

କାବ୍ୟର ଅନେକସ୍ଥଳେ କବି ପଦ୍ମପୁରାଣର ନାମୋଲ୍ଲେଖ କରିଥିଲେହେଁ କାର୍ଯ୍ୟତଃ ପୁରାଣକାରଙ୍କ ବର୍ଣ୍ଣନାଠାରୁ ତାଙ୍କର ବର୍ଣ୍ଣନା ଅନେକ ସ୍ଥଳରେ ଭିନ୍ନ ଆକାର ଧାରଣ କରିଅଛି । ସୂକ୍ଷ୍ମଦର୍ଶୀ ପାଠକଗଣ ଦେଖିପାରିବେ ଯେ, ଭାଗବତର ରୁକ୍ମିଣୀ ପରିଣୟ ବର୍ଣ୍ଣନା ସଙ୍ଗେ କବି କାର୍ତ୍ତିକଙ୍କ ବର୍ଣ୍ଣନାର ସାମଞ୍ଜସ୍ୟ ଅପେକ୍ଷାକୃତ ଅଧିକତର ମାତ୍ରାରେ ପ୍ରକଟିତ ହୋଇଅଛି । ତେଣୁ ଭାଗବତକାରଙ୍କ ନିକଟରେ ନିଜକୁ ଋଣୀ ବୋଲି ସ୍ୱୀକାର ନ କରି କବି କି ଉଦ୍ଦେଶ୍ୟରେ ପଦ୍ମପୁରାଣର ନାମୋଚ୍ଚାରଣ କରିଅଛନ୍ତି, ସେ ବିଷୟରେ ଅନେକ କୌତୂହଳାକ୍ରାନ୍ତ ହୋଇ ପ୍ରଶ୍ନ କରିପାରନ୍ତି । ସେ ପ୍ରସଙ୍ଗରେ ଆମ୍ଭମାନଙ୍କର ବକ୍ତବ୍ୟ ଏତିକି ଯେ, କବିଙ୍କ ସମସାମୟିକ

ଏହି ଉତ୍କଳ ଖଣ୍ଡରେ ଯେଉଁ ପଦ୍ମପୁରାଣ (ଓଡ଼ିଆ) ପ୍ରଚଳିତ ଥିଲା, ସେଥିରେ ବୋଧହୁଏ ମୂଳ ପଦ୍ମପୁରାଣଠାରୁ ଅନେକ ନୂତନବର୍ଣ୍ଣନା ସ୍ଥାନ ପାଇଥିଲା ଏବଂ ତାହାର ଆଦର୍ଶରେ କବି କାର୍ତ୍ତିକ ବୋଧହୁଏ କଥାଚରିତ୍ରର ଅସ୍ଥିକଙ୍କାଳ ପାଇଁ ଉପକରଣ ସଂଗ୍ରହ କରିଅଛନ୍ତି । ଓଡ଼ିଆ ପଦ୍ମପୁରାଣର ସମସ୍ତ ଅଂଶ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇପାରି ନାହିଁ । ଯଦି କୀଟଦଷ୍ଟ ହୋଇ ତାହା ନଷ୍ଟ ହୋଇଯାଇ ନ ଥାଏ, ତେବେ ନିକଟ କିମ୍ବା ଦୂର ଭବିଷ୍ୟତରେ ତାହା ଲୋକଲୋଚନରେ ପଡ଼ିବ ଏବଂ ସେତେବେଳେ ଆମ୍ଭମାନଙ୍କର ଏହି ଆଲୋଚନାର ମାର୍ଗ ପରିବର୍ତ୍ତିତ ହୋଇ ଉନ୍ନତିରେ ପ୍ରଦର୍ଶିତ ହେବ ।

କାବ୍ୟଟିର ଆଭ୍ୟନ୍ତରୀଣ ବର୍ଣ୍ଣନାବଳୀରୁ ବିଶେଷତଃ ବିବାହୋ-ତ୍ସବ ବର୍ଣ୍ଣନାରୁ ଜଣାଯାଏ ଯେ, କବିଙ୍କ ସମସାମୟିକ ଉତ୍କଳରେ ପ୍ରାଜାପତ୍ୟ ବିବାହ ଓ ନାରୀମାନଙ୍କର ଅବଗୁଣ୍ଠନ ପ୍ରଥା ପ୍ରଚଳିତ ଥିଲା । ବୈଦିକ ବିବାହ-ପଦ୍ଧତିରେ କାଳକ୍ରମେ ଯେଉଁ ସବୁ ପ୍ରାଦେଶିକ ଆଚାର ବ୍ୟବହାର ସ୍ଥାନ ଅଧିକାର କରିଅଛି, ସେ ସକଳର ଏକ ଧାରାବାହିକ ଇତିହାସ ମଧ୍ୟ କାବ୍ୟରୁ ସଂଗ୍ରହ କରାଯାଇ ପାରିବ । କବିଙ୍କ ବ୍ୟକ୍ତିଗତ ଜୀବନର ଅଭିଜ୍ଞତା ଓ ଅନୁଭୂତି ଯେ ଭାବରେ କାବ୍ୟରେ ପ୍ରତିବିମ୍ବିତ ହୋଇଥିବାର ଦେଖାଯାଇଅଛି, ସେଥିରୁ ଅନୁମାନ କରାଯାଇପାରେ ଯେ ସେ ଜାତିରେ ବ୍ରାହ୍ମଣ ଥିଲେ ଏବଂ ପୌରୋହିତ୍ୟ ବୃତ୍ତି ଦ୍ୱାରା ଜୀବିକା ଅର୍ଜନ କରୁଥିଲେ । ହର୍ଷ କାଳିଦାସ ଓ ଜୟଦେବ ପ୍ରମୁଖ ସଂସ୍କୃତ କବିମାନଙ୍କର ମୌଳିକତାଦ୍ୱାରା କବି କାର୍ତ୍ତିକ ଅନେକଥର ପ୍ରଭାବିତ ହୋଇଅଛନ୍ତି । ଏପରି ଅବସ୍ଥାରେ ସେ ଜଣେ ସଂସ୍କୃତଭାଷାବିତ୍ ପଣ୍ଡିତ ଥିଲେ ବୋଲି କହିବା ମଧ୍ୟ ଅସଙ୍ଗତ ନୁହେଁ ।

---

# କୃତଜ୍ଞତା ସ୍ୱୀକାର

ରୁକ୍ମଣୀବଭ୍ରର ପ୍ରଥମ (କ) ପୋଥି ମୋର ମାତୃ-ସ୍ୱସା ପୁତ୍ର କଲ୍ୟାଣୀୟ ଶ୍ରୀମାନ୍ କେଦାରଚନ୍ଦ୍ର ମଙ୍ଗରାଜ ମହାପାତ୍ର ଦ୍ୱାରା ମୁଁ ପ୍ରଥମେ ପ୍ରାପ୍ତ ହୋଇ ସମିତି-ଅଫିସ୍‌କୁ ଏକବର୍ଷ ତଳେ ପଠାଇଥିଲି । ତାହାର କମନୀୟ କବିତା-କଳାରେ ମୁଗ୍ଧ ହୋଇଥିଲେ ସୁଦ୍ଧା ସମିତି ଅନ୍ୟ ଖଣ୍ଡିଏ ପୋଥିର ଅଭାବ ଯୋଗୁ ଏପର୍ଯ୍ୟନ୍ତ ତହିଁର ସମ୍ପାଦନ ଓ ମୁଦ୍ରଣ କରି ପାରୁ ନଥିଲେ । କିନ୍ତୁ ମଧୁପୁର ରାଜବାଟୀରୁ ରାଭେନ୍ସା-କଲେଜର ବି:ଏ: ଛାତ୍ର ଶ୍ରୀମାନ୍ ପୀତାମ୍ବର ବଳ ଦ୍ୱିତୀୟ (ଖ) ପୋଥି ସମିତି-ସ୍ଥାପୟିତା ପୂଜ୍ୟପାଦ ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍: ଏ: ଙ୍କୁ ଆଣିଦେବାରୁ ରୁକ୍ମଣୀ-ବଭ୍ରର ପ୍ରାଚୀ-ସଂସ୍କରଣ-ପ୍ରକାଶ-ପଥ ସୁଗମ ହେଲା । ସମିତି ଶ୍ରୀମାନ୍ କେଦାରଚନ୍ଦ୍ର ଓ ଶ୍ରୀମାନ୍ ପୀତାମ୍ବର ଏହି ଦୁଇ ଯୁବକଙ୍କ ଅନନ୍ୟ-ସାଧାରଣ ପୋଥି-ସଂଗ୍ରହ-ଉତ୍ସାହ ଦ୍ୱାରା ଯଥେଷ୍ଟ ଉପକୃତ ହୋଇଥିବାରୁ ସେମାନଙ୍କୁ ଏତଦ୍ଦ୍ୱାରା ସ୍ୱୀୟ କୃତଜ୍ଞତା ଜ୍ଞାପନ କରୁଅଛି । ମଧୁପୁରର ସ୍ୱଦେଶ-ପ୍ରେମିକ ସାହିତ୍ୟରସିକ ରାଜାସାହେବ ମହୋଦୟ ତାଙ୍କ ଗାଦୀର ପୋଥି ଅକୁଣ୍ଠିତ ଚିତ୍ତରେ ସମିତି ହସ୍ତରେ ଅର୍ପଣ କରିବାକୁ ଅନୁମତି ଦେଇ ସମିତିର ଅଶେଷ କୃତଜ୍ଞତା ଅର୍ଜନ କରିଅଛନ୍ତି ଓ ତାଙ୍କର ଏତାଦୃଶ ସାହିତ୍ୟ-ପ୍ରୀତି ଯେ ଉତ୍କଳର ଅନ୍ୟାନ୍ୟ ନରପତିମାନଙ୍କର ସମ୍ୟକ୍ ଅନୁକରଣୀୟ କହିବା ବାହୁଲ୍ୟ ମାତ୍ର ।

| | |
|---|---|
| ସମିତି କାର୍ଯ୍ୟାଳୟ<br>ଗଣେଶଘାଟ, କଟକ | ଶ୍ରୀବିଚ୍ଛନ୍ଦଚରଣ ପଟ୍ଟନାୟକ ବି. ଏ.<br>ସମ୍ପାଦକ, ପ୍ରାଚୀସମିତି । |

# ରୁକ୍ମିଣୀ ବଭା

## ପ୍ରଥମ ଛାନ୍ଦ

ରାଗ—ବଭାସ ଗୁଜ୍ଜରୀ

ଶ୍ରୀନୀଳସୁନ୍ଦର ଗିରି          ଛଥି ପରେ ବଳେ ହରି
ଶରଣଜନଙ୍କ ପକ୍ଷପାତ ହେ ।
ଅନୁକ୍ଷଣେ ଦୟା କରେ          ଅପରାଧ ପରିହରେ
ଯେସନେ ବାଳକ ନିଜ ମାତ ହେ । ୧ ।

ନବଘନ ଶ୍ୟାମ ରୂପ          ପରମ ଆନନ୍ଦ କୂପ
ଅନନ୍ତ କୋଟି ବ୍ରହ୍ମାଣ୍ଡ ନାଥ ହେ ।
ମଉଳ ମଣି ମୁକୁଟ          ସପତ ଶାଖା ପ୍ରକଟ
କମ୍ବୁ ସୁଦର୍ଶନ ଶୋଭେ ହାଥ ହେ । ୨ ।

ଶ୍ରବଣେ ମଣିକୁଣ୍ଡଳ          ବଦନ କାଳନ୍ଦୀ ଜଳ
ନୟନ ବିକଚ ପଦ୍ମ ଜିଣି ହେ ।

ଦଶ ଗୁଜ୍ଜରୀ (ଗ) । ୧-୧—ଛଅ ପରେ ବଳେ କର (ଖ) । ୨-୨—ଅଖିଳ କୋଟି (କ) । ୩-୧—ଜାଣି (ଖ) ।

---

୧ । ଶ୍ରୀନୀଳସୁନ୍ଦର-ଗିରି—ପୁରୁଷୋତ୍ତମ । ପରିହରେ—ପରିତ୍ୟାଗ କରେ, ଧରେ ନାହିଁ ।

୨ । ନବଘନ—ନୂଆ ମେଘ । ପରମ—ଅତିଶୟ । କୂପ—କୂଅ । ମଉଳ—ମୁଣ୍ଡ । ପ୍ରକଟ—ପ୍ରକାଶ । କମ୍ବୁ—ଶଙ୍ଖ ।

ଅଧର-ପ୍ରବାଳ-ନାବ ଅଖିଳ ନିଗମ ଠାବ
ପ୍ରସରଇ ସୁଧାମୟ ବାଣୀ ହେ । ୩ ।

କପାଳେ ତିଳକ ଶୋଭା କସ ପଟ୍ଟାମ୍ବର ଦେବା
ଶରଦ ସୁଧାନିଧି କ ଗଞ୍ଜେ ହେ ।
ହୃଦୟ ଅତି ବିଶାଳ ନାନା ବର୍ଣ୍ଣେ ବନମାଳ
ଅଖିଳ ଜନ ନୟନ ରଞ୍ଜେ ହେ । ୪ ।

ଶ୍ରୀବତ୍ସ ଚିହ୍ନ ହୃଦର କଉସ୍ତୁଭ ମଣିହାର
ପ୍ରଚଣ୍ଡଚଣ୍ଡ କିରଣ ଗଞ୍ଜେ ହେ ।
ଚନ୍ଦନେ ସାମଳ ଅଙ୍ଗ ପିନ୍ଧିଣେ ପଉଳ ରଙ୍ଗ
କଟୀରେ କ୍ଷୁଦ୍ର କିଙ୍କିଣୀ ସାଜେ ହେ । ୫ ।

ଦୁର୍ଲ୍ଲଭ ଶିରୀଚରଣ ଧ୍ୱଜ ବଜ୍ର ପଦ୍ମ ମୀନ
ଭବ ଦୁଃଖ-ସାଗରର ଭେଳା ହେ ।
କାର୍ତ୍ତିକ ଦୀନ ଶରଣ ପଶିଲା ସେହୁ ଚରଣ
ଅଖିଳ ବ୍ରହ୍ମାଣ୍ଡ ଯାର ଖେଳା ହେ । ୬ ।

୩-୨—ପ୍ରସରୁଛି (କ), ସୁଧାରସ (ଖ)।
୪-୧—କିରଣ କୋଟି (ଖ), ଖଣ୍ଡେ (କ)। ୫-୨—କଟୀମୂଳ··ସେ ମଣ୍ଡେ (କ)।
୬-୧—ଦୁର୍ଲଭ ଚରଣ ଧ୍ୱଜ ବଜ୍ର ପଦ୍ମ ମୀନ ଭବ ଦୁଃଖ-ସାଗରକୁ ଅଟେ ଭେଳା (କ)। ୬-୨—ଅଶେଷ (ଖ)।

---

୩ । ଶ୍ରବଣେ—କାନରେ । ବଦନ—ମୁଖ । ବିକଚ—ଫୁଟିଲା । ଅଧର ପ୍ରବାଳ ନାବ—ପୋହଳା ପରି ଲାଲ ଓଠ ଗୋଟିଏ ନୌକା କି ? ଅଖିଳ ନିଗମ—ସମସ୍ତ ବେଦର । ସୁଧାମୟ—ପ୍ରଚୁର ଅମୃତ ତୁଲ୍ୟ । ୪ । ସୁଧାନିଧି—ଚନ୍ଦ୍ର । ଅଖିଳ—ସମସ୍ତ । ୫ । ଚଣ୍ଡକିରଣ—ସୂର୍ଯ୍ୟ । ପଉଳ ରଙ୍ଗ—ନାଲ ଲୁଗା ।
୬ । ଧ୍ୱଜ—ପତାକା । ମୀନ—ମାଛ । ଭବ—ସଂସାର । ସାଗର—ସମୁଦ୍ର ।

କୃପା କର ଦୟାନିଧି ଦେବା ମୋତେ ସଦବୁଦ୍ଧି
କହିବ ରୁକ୍ମିଣୀବିଭା ବିଧି ହେ ।
କହ ତ ମୋହୋର ମନ କୃପା କର ଭଗବାନ
ଦୀନଜନ ବନ୍ଧୁ ଦୟାନିଧି ହେ । ୭ ।

ଅପୂର୍ବ ଜସ ପ୍ରକାଶ ଯହିଁ କବି ବେଦବ୍ୟାସ
ତହିଁ ମନ ବଢ଼ିବ କେମନ୍ତେ ହେ ।
କେବଳ ଭରସା ଏହି ଯହିଁ ଅଧିକାର ନାହିଁ
କୃପା କର ଦେଇଛ ଜଗତେ ହେ । ୮ ।

ଯେବଣ କଥାରେ ଦୋଷ ନ ଧରିବେ ସାଧୁ ଲୋକ
ତେଣୁ ମୋହୋର ଭରସା ଚିତ୍ତେ ହେ ।
ନିନ୍ଦି ନ ପାରିବେ ଖଳ ଶ୍ରୀକୃଷ୍ଣ କଥା ନିର୍ମଳ
ଗାଇବଇଁ ଭାଷା ଛନ୍ଦ ଗୀତେ ହେ । ୯ ।

ହରି ରୁକ୍ମିଣୀର ବିଭା ଶୁଣି ତ ଶ୍ରବଣ ଲୋଭା
ଭଗତ ଜନଙ୍କ ପ୍ରେମନିଧି ହେ ।
ଗାଇଲା କାର୍ତ୍ତିକ ଦୀନ ହରି ପାଦେ ଦେଇ ମନ
ମନୋରଥ କର ମୋର ସିଦ୍ଧି ହେ । ୧୦ ।

୭-୧—ମୋରେ (କ), ବନ୍ଧ (କ) । ୭-୨—ସେ ମୂରୁଖ (କ) । ୯-୧—ସେବାରେ (ଖ), ନ ଧରନ୍ତି (କ) । ୯-୨—ମୋହ...କଣ୍ଠ (ଗ) । ୧୦-୧—ଭକ୍ତଜନଙ୍କର (ଙ) ।

୭ । ଦୀନ ଜନ—ଦୁଃଖୀ ଲୋକ ।

# ଦ୍ୱିତୀୟ ଛାନ୍ଦ

ରାଗ—ଗୁଜ୍ଜରୀ

ଶୁଣ ହେ ସୁଜନ ଜନ ଏଥୁ ଅନନ୍ତରେଣ
ପରମ-ବ୍ୟୋମରେ ବଜେ ପ୍ରଭୁ ନାରାୟଣ ଯେ । ୧ ।

ମହାଯୋଗ ପୀଠର ଉପରେ ଅଷ୍ଟଦଳ
ବିକଚ କମଳ ମଧ୍ୟେ କର୍ଣ୍ଣିକା ନିର୍ମ୍ମଳ ହେ । ୨ ।

ତହିଁର ଉପରେ ବଜେ ଅଖିଳ ନିବାସ
ଅଷ୍ଟଦଳେ ଅଷ୍ଟ ପରିବାରୀ ଖଟେ ପାଶ ହେ । ୩ ।

ସଜଳ ଜଳଦ ତନୁ ଇନ୍ଦ୍ର ନୀଳମଣି
ବାମ ଜାନୁ ଉପରେ ବଜନ୍ତି କମଳିଣୀ ହେ । ୪ ।

କିରୀଟ କୁଣ୍ଡଳ ଶଙ୍ଖ ଚକ୍ର ଶୋହେ କର
ଶ୍ରୀବତ୍ସ ଲାଞ୍ଛନ ବନମାଳା ପୀତାମ୍ବର ହେ । ୫ ।

ବିଦ ମୁଦ୍ର କଙ୍କଣ ବାହୁଟୀ ତହିଁ ବନ୍ଧ
ସଚ୍ଚିତ୍ୟ ଶୁଦ୍ଧମୟେ ରୂପ କେବଳ ଆନନ୍ଦ ହେ । ୬ ।

୧-୨—ପରମବ୍ୟୋମର ବାଜ (କ) । ୩-୨—ସେବେ (ଖ) । ୫-୨—ଲକ୍ଷଣ (ଗ) ।

---

୧ । ପରମ ବ୍ୟୋମରେ—ପରମ ଶୂନ୍ୟରେ (ଆକାଶରେ) ।

୨ । ପୀଠ—ପୀଢ଼ । ଅଷ୍ଟଦଳ – ଅଠ ପାଖୁଡ଼ା । ବିକଚ କମଳ—ଫୁଟିଲା ପଦ୍ମ । କର୍ଣ୍ଣିକା—ପଦ୍ମ ପୁଷ୍ପର ।

୪ । ଅଖିଳ ନିବାସ — ନାରାୟଣ । (୪) ସଜଳ ଜଳଦ – ପାଣିପୂର୍ଣ୍ଣ ମେଘ । ତନୁ-ଦେହ । ବାମ ଜାନୁ—ବାମ ଜଂଘ ।

୫ । କିରୀଟ—ମୁକୁଟ । କର—ହାତରେ । ଲାଞ୍ଛନ—ଚିହ୍ନ । ପୀତାମ୍ବର—ହଳଦିଆ ଲୁଗା ।

ବାମେ ଭୂଶ୍ରୀ ଧରଣୀ ଦକ୍ଷିଣେ ଲୀଳାଦେବୀ
ପରିବାରପଣେଣ ଅଛନ୍ତି ଯହିଁ ସେବି ହେ । ୭ ।

ବ୍ରହ୍ମା ଶିବ ଦେଖିବାକୁ ନୁହନ୍ତି ଭାଜନ
କେବଳ ଜାଣନ୍ତି ଅନୁଭବ ଭକ୍ତଜନ ହେ । ୮ ।

ତହିଁ ଏକ ଦିନେ ନିଜ ଭୂଜକୁ ଅନାଇ ।
ସଂଗ୍ରାମକୁ ମନୋରଥ କଲେ ଯଦୁସାଇଁ ହେ । ୯ ।

ଅମ୍ଭ ସଙ୍ଗେ ଲୀଳାକୁ କେ ହୋଇବ ଭାଜନ ।
କେବଳ ଜାଣନ୍ତି ଭାବ ଅମ୍ଭ ନିଜ ଜନ ହେ । ୧୦ ।

ପଶ୍ଚିମ ଦ୍ୱାରେଣ ଛନ୍ତି ଦ୍ୱାରପାଳ ଦୁଇ
୫ଶ୍ରୀ ଜୟ ବିଜୟ ବୋଲି ଯାହାକୁ ସେ କହି ହେ । ୧୧ ।

ତାହାଙ୍କ ସଙ୍ଗତେ ଲୀଳା କରିବା ବିଗ୍ରହ
ବ୍ରାହ୍ମଣ ଦ୍ୱାରେଣ ତାଙ୍କୁ ଶାପ ଦେଲେ ହରି ହେ । ୧୨ ।

ଶାପ ମୋକ୍ଷ ହୋଇବାକୁ ଛାମୁରେ ଜଣାଇ
ସାଷ୍ଟାଙ୍ଗେ ପ୍ରଳମ୍ବ ହୋଇ କର ଯୋଡ଼ି କହି ହେ । ୧୩ ।

ଦେଖିଣ ବୋଲନ୍ତି ପ୍ରଭୁ ଦେବ ଦାମୋଦର
ସନକାଦି ଶାପ ଦେଲେ ଯାଅ ମର୍ତ୍ତ୍ୟପୁର ହେ । ୧୪ ।

୭-୨—ପରିବାରଗଣେ ଯେତେ ଅଛନ୍ତି ସେ ସେବ (ଖ) । ୮-୨—ମନେ ଚିନ୍ତା କରନ୍ତି ଅସଂଖ୍ୟ ମୁନିଗଣେ ହେ (କ) ।୧୨-୧—ଶପଥ (କ), ବସ୍ତାଇ (ଗ) । ୧୨-୨—ବ୍ରୂପେଣ ଶାପ ଦେଲେ ତାଙ୍କ (ଖ) ।୧୩-୨—ଶୋଇ (କ) ।

୭ । ଧରଣୀ—ପୃଥିବୀ । ଲୀଳାଦେବୀ—ସରସ୍ୱତୀ ।

୮ । ଭାଜନ—ପାତ୍ର । ଅନୁଭବ – ନଜର ।

୯ । ଭୂଜକୁ—ବାହୁକୁ । ସଂଗ୍ରାମକୁ—ଯୁଦ୍ଧକୁ ୧୩ । ପ୍ରଳମ୍ବ—ପ୍ରଣାମ ।

ଭକ୍ତ ଭାବେ ଭଜିଲେ ସପତ ଜନ୍ମ ଥିବ
ତହୁଁ ଉତ୍ତାରେଣ ନିଜ ସେବାହୁଁ ଯାଇବ ହେ । ୧୫ ।

ରିପୁ ଭାବେ ଭଜିଲେ ପାଇବ ଜନ୍ମ ତିନି
ଯେ ତୁମ୍ଭର ଇଚ୍ଛା ବର ମାଗ ଭାଇ ବେନି ହେ । ୧୬ ।

ପାଦେ ପଡ଼ି ବୋଇଲେ ବଇର ଭାବେ ଥିବୁ
ତହିଁର ଉତ୍ତାରୁ ନିଜ ସେବାକୁ ଆସିବୁ ହେ । ୧୭ ।

ହସିଣ ବୋଲନ୍ତି ପ୍ରଭୁ ଜଗତ ଈଶ୍ୱର
ବେଗେ ଯାଇଁ ଜନ୍ମ ତୁମ୍ଭେ ଲଭ ମର୍ତ୍ତ୍ୟପୁର ହେ । ୧୮ ।

ଭୂଲୋକରେ ଆମ୍ଭେ ଯେ ହୋଇବୁ ଅବତାର
ତୁମ୍ଭର ସଙ୍ଗରେ ଆମ୍ଭେ କରିବୁ ସମର ହେ । ୧୯ ।

ଆମ୍ଭର ବାଣରେ ତୁମ୍ଭେ ହୋଇବ ନିଧନ
ବାହୁଡ଼ି ପାଇବ ଆସି ତୁମ୍ଭ ନିଜ ସ୍ଥାନ ହେ । ୨୦ ।

ଏସନେକ ଆଜ୍ଞା ଶିରେ ଘେନି ଦୁହେଁ ଗଲେ
ଅସୁର ଶରୀର ହୋଇ ଜନ୍ମ ସେ ଲଭିଲେ ହେ । ୨୧ ।

ହିରଣାକ୍ଷ ହିରଣ୍ୟକଶିପୁ ବେନି ବୀର
ପ୍ରଚଣ୍ଡ ପ୍ରତାପେଣ ଜିଣିଲେ ତିନିପୁର ହେ । ୨୨ ।

୧୫-୧—ଭୃତ୍ୟ ଭାବେ (କ) । ୧୫-୨—ତହିଁର ଅନ୍ତରେ (କ) । ୧୬-୨—ତିନି ଜନ୍ମ ପାଇ (ଖ) । ୧୮-୨—ଜନମ ହୋଇବ (କ) । ୧୯ । ସଙ୍ଗତେ (କ) । ୨୧-୨—ଜନମ (କ) । ୨୨-୧—ଦୁଇ (କ) ।

---

୧୬ । ରିପୁଭାବେ—ଶତ୍ରୁତ୍ୱରେ । ୧୯ । ଭୂଲୋକରେ—ପୃଥିବୀରେ । ସମର - ଯୁଦ୍ଧ ।
୨୦ । ନିଧନ—ମରଣ (ମୃତ୍ୟୁ) ।
୨୨ । ପ୍ରଚଣ୍ଡ—ପ୍ରବଳ । ତିନି ପୁର—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ।

ହିରଣାକ୍ଷ ବୋଲିଣ ସେ ଅଛି ମହାବଳୀ
ପଞ୍ଚଣ କୋଟି ଧରଣୀ କରେ ଧରି ତୋଳି । ୧୩ ।

ପାତାଳେ ପଶିଣ ସେ କାରୁଣ ଜଳେ ଖେଳ
କୋଲ ଅବତାରେଣ ମାଇଲେ ବନମାଳୀ ହେ । ୧୪ ।

ହିରଣ୍ୟ କଶିପୁ ବୋଲି ଯେବଣ ଦନୁଜ
ନୃସିଂହ ରୂପେଣ ତା ମାଇଲେ ଦେବରାଜ ହେ । ୧୫ ।

ଜନ୍ମିଣ ହୋଇଲେ ସେ ରାବଣ କୁମ୍ଭକର୍ଣ୍ଣ
ଦଶରଥ ଘରେ ହରି ରାମ ରୂପେ ଜନ୍ମ ହେ । ୧୬ ।

ସୀତାଯେ ପରମଲକ୍ଷ୍ମୀ ନେଲା ସେହୁ ହରି
ସେ କାରଣୁ ବିନାଶ କଲେକ ଦଇତାରି ହେ । ୧୭ ।

ରାବଣ ହୋଇଲା ଆସି ପୁଣି ଶିଶୁପାଳ
ଜଗନ୍ନାଥ ହୋଇଲେକ ଦେବକୀର ବାଳ ହେ । ୧୮ ।

କଂସ କେଶୀ ଅସୁରେ ପୂରିଲେ ମହୀଭାଗ ।
ବ୍ରାହ୍ମଣନ୍ତ ମାରଣ ସେ ବିଘ୍ନ କଲେ ଯାଗ ହେ । ୧୯ ।

ନନ୍ଦଘରେ ବଢ଼ିଲେକ କମଳାରମଣ
କମଳଣୀ ଉପୁଜିଲେ ଭୀଷ୍ମକ ଘରେଣ ହେ । ୨୦ ।

୧୩-୧—ମେଦନୀ (ଖ) । ୧୪-୧—କେଳି (ଗ) । ୧୬-୧—ଦଶଶିର (ଖ) ।
୧୮-୧—ଶ୍ରୀକୃଷ୍ଣ ହୋଇଲେ ଆସି ଦେବକୀ ଦୁଲାଳ (ଖ) । ୧୯-୧—କଂସ ଆଦ (ଖ) ।

---

୧୩ । ପଞ୍ଚଣ—ପଚାଶ । ଧରଣୀ—ପୃଥିବୀ । କରେ-ହାତରେ ।
୧୪ । କାରୁଣ ଜଳେ—କାରଣାର୍ଣ୍ଣବରେ । କୋଲ—ବରାହ ।
୧୫ । ଦନୁଜ—ଅସୁର । ଦେବରାଜ—ନାରାୟଣ । ୧୭ । ହରି—ଗ୍ରହଣ କରି ।
୨୦ । କମଳାରମଣ—ଶ୍ରୀକୃଷ୍ଣ । କମଳଣୀ—ଲକ୍ଷ୍ମୀ ।

ଅବତାର ହୋଇ ହର ଗଞ୍ଜିଲେକ ଦୁଷ୍ଟ
ସାଧୁ ଜନମାନଙ୍କର ଗଲା ସବୁ କଷ୍ଟ ହେ । ୩୧ ।

ସଙ୍ଗେ ଉପୁଜିଲେ ସେହୁ ଶେଷ ବଳରାମ
ଧବଳ ମୂରତି ରୂପ ଜଣି କୋଟିକାମ ହେ । ୩୨ ।

ଗୋଗୋଷ୍ଠେ ଅନେକ ସୁରରିପୁ କଲେ ନାଶ ।
ପୂତନାର ପ୍ରାଣ ହତ କଲେ ପୀତବାସ ହେ । ୩୩ ।

ଶକଟ ଭାଞ୍ଜିଲେ ତୃଣାବର୍ତ୍ତ ନିସୂଦନ
ଧନପାଳ ପୁତ୍ରଙ୍କୁ ତାରିଲେ ଭଗବାନ ହେ । ୩୪ ।

ଅଘା ଅଜଗର ବକା ବଦନ ବିଦାରି
କେଶୀ ପିଣ୍ଡ ମନ୍ଥନ କଲେକ ଦଇତାରି ହେ । ୩୫ ।

ନାଚିଲେ କାଳିଅ ଫଣୀ ଫଣାର ଉପର
ମୋଡ଼ି ପକାଇଲେ ଶିର ଅରିଷ୍ଟ ଅସୁର ହେ । ୩୬ ।

କୁଶକେତୁ ହରଣ ନେଲାକ ବତ୍ସମାନ
ଦିବ୍ୟମାୟା ଦେଖାଇ ତୋଷିଲେ ଭଗବାନ ହେ । ୩୭ ।

୩୧-୨—ଭଙ୍ଗି ଗଲା (ଗ) ; ୩୨-୨—ଜାଣି ରୂପେ (ଖ), ୩୩—ପ୍ରାଣପାନ (ଖ) ।

---

୩୨ । ଶେଷ—ଅନନ୍ତ ସ୍ୱରୂପୀ । ୩୩ । ସୁରରିପୁ—ଅସୁର । ପୀତବାସ—ଶ୍ରୀକୃଷ୍ଣ ।

୩୪ । ନିସୂଦନ— ମାରିବା । ଧନପାଳ ପୁତ୍ର—ଅଭିଶାପ ପ୍ରାପ୍ତ କୁବେର ପୁତ୍ର ଯାମଳାର୍ଜ୍ଜୁନ

୩୫ । ବଦନ—ମୁଖ । ୩୬ । କାଳିଅଫଣୀ—କାଳୀନାଗ ।

୩୭ । କୁଶକେତୁ – ବ୍ରହ୍ମା । ହରିଣ—ହରିନେଇ । ଦିବ୍ୟମାୟା—ଅଲୌକିକ ମାୟା ଅର୍ଥାତ ବ୍ରହ୍ମା ବାଛୁରି ହରିନେବାରୁ ଭଗବାନ ମାୟାରେ ତାହାଙ୍କୁ ଅନେକ ବ୍ରହ୍ମା ଥିବାର ଦେଖାଇଥିଲେ ।

ଗୋପାଳମାନଙ୍କୁ ହରି ନେଲା ବ୍ୟୋମାସୁର
ତାହାକୁ ମାରଣ ଯାଇଁ ଫେଡ଼ିଲେ କନ୍ଦର ହେ । ୩୮ ।

ଇନ୍ଦ୍ରପୂଜା ଭାଙ୍ଗିଲେକ ଦେବ ଦାମୋଦର
ସପ୍ତଦିନ ପର୍ଯ୍ୟନ୍ତେ ଧଇଲେ ମନ୍ଦର ହେ । ୩୯ ।

ପ୍ରଲମ୍ବା ଧେନୁକା ମୂଳେ ଅନେକ ଅସୁର
ମାରି ଉଦ୍ଧାରିଲେ ମହା ଯଦୁବଂଶ ବୀର ହେ । ୪୦ ।

ମୋହନ ମୁରଲୀ କରେ ଧରି ବନମାଳୀ
ରାସରସେ ରମିଲେ ଅନେକ ବ୍ରଜନାରୀ ହେ । ୪୧ ।

ଅକ୍ରୂର ସଙ୍ଗତେ ହରି ମଥୁରାକୁ ଗଲେ
କୁବଳୟା କରୀ ଅଷ୍ଟମଲ୍ଲକୁ ମାଇଲେ ହେ । ୪୨ ।
ମହାଦେବ ଧନୁ ସେ ଭାଙ୍ଗିଲେ ଭୁଜବଳେ ।
କଂସ କେଶ ଧରି ପକାଇଲେ ମହୀତଳେ ହେ । ୪୩ ।

ଯଦୁବଂଶ ରକ୍ଷିଣ ହୋଇଲେ ଯଦୁନାଥ
ପୁଣି ଛତ୍ର ଧରାଇଲେ ଉଗ୍ରସେନ ମାଥ ହେ । ୪୪ ।

ବସୁଦେବ ଦେବକୀର ପୁତ୍ରଭାବ ଘେନି
କେତୁଦିନ ମଥୁରା ରହିଲେ ଭାଇ ବେନି ହେ । ୪୫ ।

୩୯-୨—ସାତଦିନ ହରେଣ ଧଇଲେ ଗିରିବର (କ) । ୪୦-୨—ଯଦୁବୀର (ଖ) ।
୪୫-୧—ହୋଇ (ଖ), ୪୫-୨—ମଧୁପୁରେ ରହିଲେ ଗୋସାଇଁ (କ) ।

---

୩୮ । କନ୍ଦର—ପର୍ବତ ଗୁହା (ବ୍ୟୋମାସୁର ଗୋପାଳ ପୁଅମାନଙ୍କୁ ଲୁଚାଇ ନେଇ ରଖିଥିବା ଗୁହା) ।
୪୧ । କରେ—ହାତରେ । ବ୍ରଜନାରୀ—ଗୋପୀ । କରୀ—ହାତୀ ।
୪୩ । ଭୁଜ—ବାହୁ । କେଶ—ବାଳ ।

ତହୁଁ ଜରାସନ୍ଧ ଆସି କଲାକ ସମର
ହାରି ପଳାଇଲା ସେହୁ ଅଷ୍ଟାଦଶ ବାର ହେ । ୪୬ ।

ଦମନ ଇନ୍ଦ୍ରକୁ ଘେନ ଅଇଲାକ ଯହୁଁ
ସମୁଦ୍ର ଉଦରେ ଦ୍ୱାରିବତୀ କଲେ ତହୁଁ ହେ । ୪୭ ।

ବିଶ୍ୱକର୍ମା ଗଢ଼ିଲା ଦ୍ୱାରକା ସବୁ ପୁର
କସ ପଞ୍ଚାନ୍ତର ଦେବା ବିଷ୍ଣୁର ନଗର ହେ । ୪୮ ।

ରଙ୍ଗେ ଦ୍ୱିଜ ହରନ୍ତି ସଙ୍ଗେଣ ବଳେବର
ଚର ପେଷୁଥାନ୍ତି ନିତ୍ୟେ ବିଦର୍ଭ ନଗର ହେ । ୪୯ ।

ବିଦର୍ଭ ଦେଶର ରାଜା ଭୀଷ୍ମକ ନୃପତି
ଅତି ବିଚକ୍ଷଣ ତାର ଅଟଇ ଦୁହିତୀ ହେ । ୫୦ ।

ଚର ମୁଖୁଁ ଶୁଣିଲେ ଅନେକ ରୂପ ଗୁଣ ।
ଶରଧା କଲେକ ଶୁଣି ପ୍ରଭୁ ନାରାୟଣ ହେ । ୫୧ ।

ଅତ୍ୟନ୍ତ ରହସ୍ୟ ଏ ରୁକ୍ମିଣୀ ସ୍ୱୟମ୍ବର
ସାଧୁଜନଙ୍କର କଣ୍ଠ ଗଜମୋତି ହାର ହେ । ୫୨ ।

ସାଧୁଜନଙ୍କର ପାଦରଜର ପ୍ରସାଦେ
ଏଣୁ ବିଘ୍ନମାନନ୍ତ ତରିବୁ ଅପ୍ରମାଦେ ହେ । ୫୩ ।

ଅପୂର୍ବ ଦ୍ୱିତୀୟ ଛାନ୍ଦ ହରି ରସ ସାର
ଭଣିଲା କାର୍ତ୍ତିକ ଜଗନ୍ନାଥ ପାଶ କର ହେ । ୫୪ ।

୪୯-୨—ବିଦର୍ଭର ପୁର (ଖ) । ୫୩-୧—ସୁଜ୍ଞ ପାଦରଜ ପରସାଦେ (ଗ) । ୫୪-୨ ଗାଇଲା (ଖ) । କୃପା କର (ଘ) ।

---

୪୬ । ସମର—ଯୁଦ୍ଧ । ଅଷ୍ଟାଦଶ—ଅଠର ।

୪୭ । ଦମନ ଇନ୍ଦ୍ରକୁ—ଅସୁର ଶ୍ରେଷ୍ଠ କାଳଦମନକୁ ।

୫୩ । ପାଦରଜ—ପାଦ ଧୂଳି । ଅପ୍ରମାଦେ—ଅକ୍ଳେଶରେ ବା ନିର୍ବିଘ୍ନରେ ।

# ତୃତୀୟ ଛାନ୍ଦ

ରାଗ—ମଙ୍ଗଳ ଧନାଶ୍ରୀ

ଏଥୁ ଅନନ୍ତରେ ଶୁଣ ଅପୂର୍ବ ରସ
ପ୍ରଭଦନ ଗୃହ ଥାଇ ବଦର୍ଭ ଦେଶ । ୧ ।

ରୁକ୍ମଣୀର ଯେସ ଯେସ ବଳାସ ମାନ ।
ଦନୁ ଦନୁ ରୂପ ତାର ହୋଇ୍ୟେ ଯେସନ । ୨ ।

ତାହା କହ ହରୁଥାନ୍ତ ଶ୍ରୀକୃଷ୍ଣ ଚତ୍ତ ।
ରୁକ୍ମଣୀର ଗୁଣ କେହ୍ନୁ ଗାବନ୍ତ ଗୀତ । ୩ ।

ଏସନ ସମୟେ ଅସି ଗୃହ ଜଣାଇ ।
ଅନ୍ତପୁରେ ରୁକ୍ମିଣୀ କ ଦେଖିଲ ମୁହିଁ । ୪ ।

ପୁଣି ପୁଣି ପଚ୍ଚରନ୍ତ ଦେବ ମୁରାର ।
କହ କସ ଅଛନ୍ତ ଭୀଷ୍ମକ କୁମାରୀ । ୫ ।

ବାଲ ଭାବ ଛାଡ଼ଣ ହୋଇଲେ କଶୋର ।
ଧୂଳ ଖେଲ ଶିଶୁ ସଙ୍ଗ କଲ୍ଲ ବଧୂର । ୬ ।

ରାଗ—ଧନାଶ୍ରୀ (ଖ) । ୩-୬—ରୂପ (ଖ) । ୫-୧—ଗୁଣ ପ୍ରଣ (ଢ) ।

---

୫ । ଭୀଷ୍ମକ କୁମାରୀ—ଭୀଷ୍ମକ ରାଜାଙ୍କ ଝିଅ ରୁକ୍ମିଣୀ ।

୬ । କଶୋର—ଏଠାରେ ରୁକ୍ମିଣୀଙ୍କର କଶୋରାବସ୍ଥା ପ୍ରାପ୍ତି ବୁଝାଉ ଅଛି । ବାଲ୍ୟ ଅବସ୍ଥା ପରେ ଏହ ଅବସ୍ଥା ଅସେ ଏବ ପନ୍ଦର ବର୍ଷ ପର୍ଯ୍ୟନ୍ତ ରହେ । ପନ୍ଦର ବର୍ଷରୁ ଅଧିକ ହେଲେ ସ୍ତ୍ରୀ ମାନଙ୍କୁ ଯୁବତୀ ବୋଲାଯାଏ । କଲ ବଧୂର—ପରତ୍ୟାଗ କରଇବ । କଶୋର ବୟସହୋଇ ଯିବାରୁ ସେ ପିଲଙ୍କ ସାଙ୍ଗରେ ଧୂଳ ଖେଳା ଖେଳ ପରତ୍ୟାଗ କଲେ ।

ପୁଣ ପୁଣ ବେଶ ବାସ ଫେଡ଼ଣ ବାନ୍ଧ ।
ଶରଧା କରଣ ଶତ ବସନ ପିନ୍ଧ । ୭ ।

ବସନ ରଞ୍ଜିଣ ବାଳୀ ଦର୍ପଣେ ଚାହେଁ ।
ଯୁବା ସଖୀମାନଙ୍କର ସନ୍ନିଧେ ଅଚ୍ଛେ । ୮ ।

ରତି କେଳି କଥା ଚାରୁ ଶୁଣିବେ ମନ ।
ଥୋକାଏ ଜାଣଇ ପରିହାସ ବଚନ । ୯ ।

କଥା କହୁ କହୁ ହାସ ଲୁଚଇ ଥାଏ ।
ଲାଜ ଭାବ ଦେହରେ ବସିଲା ଥୋକାଚ୍ଛେ । ୧୦ ।

ଶୈଶବ କୁରଙ୍ଗୀକି କିଶୋର ହରି ।
ତ୍ରାସୁଁ ତ୍ରାସୁଁ ପଳାଇଲା ସେ ଭୟ କରି । ୧୧ ।

ବକ୍ଷଦେଶେ ଉରଜ ହୋଇଲା ପ୍ରକାଶ ।
ଘୋଡ଼ାଇଲେ ଉଚ୍ଚ ଦେଶେ ହୃଦୟବାସ । ୧୨ ।

୮-୧—ରଞ୍ଜିଣ, ୮-୨—ଚାହିଁ ଯାଏ (ଖ) । ୯-୧—ରତିକଳା (ଗ) । ୯-୨-ଶୁଣିଲା ।

---

୭ । ଶତ ବସନ—ବହୁତ ପ୍ରକାରର ଅନେକ ଲୁଗା ।

୮ । ଦର୍ପଣେ—ଆରସିରେ । ସନ୍ନିଧେ—ପାଖରେ ।

୯ । ଶୁଣିବେ—ଶୁଣିବାକୁ ।

୧୧ । ରୁକ୍ମିଣୀଙ୍କର ପିଲାଦିନ କ୍ରମେ କ୍ରମେ ଚାଲିଗଲା ଏବଂ କିଶୋର ବୟସ କ୍ରମେ କ୍ରମେ ପହଞ୍ଚିଲା । ଏହି କଥାଟିକୁ କବି ନିଜର ଭାଷାରେ ପ୍ରକାଶ କରିଅଛନ୍ତି ଯେ, ଶୈଶବ କାଳ ହେଲା (କୁରଙ୍ଗୀ) ହରିଣୀ ଏବଂ କିଶୋର ଅବସ୍ଥା ହେଲା (ହରି) ସିଂହ । ସିଂହ ହରିଣୀକୁ (ଗ୍ରାସ କରିବାକୁ) ଖାଇବାକୁ ଗୋଡ଼ାଇଲେ ସେ ଯେପରି ଭୟ କରି ପଳାଏ, ରୁକ୍ମିଣୀଙ୍କର କିଶୋର ବୟସ ଆସିବାରୁ ସେହିପରି ଶୈଶବ କାଳ ପଳାଇଲା ।

୧୨ । ବକ୍ଷଦେଶେ—ଛାତିରେ । ଉରଜ—ସ୍ତନ । ହୃଦୟବାସ—ଛାତିରେ ପିନ୍ଧିଥିବା ଲୁଗା ।

ପ୍ରଥମେ ବିଜୟେ କଲେ ମଦନସ୍ୱୟେ ।
ଅନୁକୂଳ କରି ଶାଢ଼ୀଘର ଠେକାଏ । ୧୩ ।

ଏଥୁ ଅନନ୍ତରେ ହୋଇଲେ ଯୁବା ପ୍ରବେଶ ।
କେ ତାର କହିବ ରୂପ ଲାବଣ୍ୟ ଲେଶ । ୧୪ ।

କୁଟିଳ କୁନ୍ତଳ ନୀଳ କବରୀ ଭାର ।
ତହିଁ କି ସମାନ କାହିଁ ହେବ ମୟୂର । ୧୫ ।

ଭ୍ରମର ବିଳାପ କରେ ବିପିନେ ଯାଇ ।
ଚାମରୀ ଚାମର ଅଧୋଭାଗେ ଲୁଚଇ । ୧୬ ।

ଉପରେ ମୋତିଜାଲିକା ରଞ୍ଜିଲା ସେହୁ ।
ତାରାଗଣ ଶୋଭିଲା କି ନବୀନ ମେହୁ । ୧୭ ।

୧୩-୧—ଅନଙ୍ଗ (ଗ) । ୧୩-୨—ଶାଢ଼ୀ ଘଟ (ଢ) । ୧୪-୨—ଲେଶ; ୧୫-୨—ନାହିଁ ହୋଏ (ଗ) । ୧୬-୧—ଅରଣ୍ୟେ (ଢ) । ୧୬-୨—ଅଧ ଅଙ୍ଗେ (ଢ) । ୧୭-୧—ଉପରେଣ ମୋତି ଜାଲି (ଖ) ।

---

୧୩ । ଶାଢ଼ୀଘର—ଲୁଗାରେ ତିଆରି ହୋଇଥିବା ଘର ବା ତମ୍ବୁ ।
୧୪ । ଯୁବା—ଯୌବନ ।
୧୫ । କୁଟିଳ···ଭାର—କୁଞ୍ଚୁକୁଞ୍ଚିଆ ବାଳରେ ବନ୍ଧା ହୋଇଥିବା କଳା ଜୁଡ଼ା । ମୟୂର—ଏଠାରେ ମୟୂର ପୁଚ୍ଛରେ ଥିବା ଚନ୍ଦ୍ରିକାକୁ ବୁଝିବାକୁ ହେବ ।
୧୬ । ରୁକ୍ମିଣୀଙ୍କ ମୁଣ୍ଡବାଳର ଶୋଭାରେ ଭ୍ରମରର କଳାରୂପ ହାରିଯିବାରୁ ସେ ଅପମାନରେ (ବିପିନେ) ଜଙ୍ଗଲରେ ଯାଇ (ବିଳାପ) ଗୁଣୁ ଗୁଣୁ ଶବ୍ଦ କରିବା ଛଳରେ କାନ୍ଦୁଥିବାର କବି ବର୍ଣ୍ଣନା କରି ଅଛନ୍ତି । ସେହିପରି (ଚାମରୀ) ଚମରୀ ମୃଗର ଲାଙ୍ଗୁଡରେ ଥିବା ଚାମର ବା ଚାମର ତଳେ ଓହଳୁଥିବାର ଦେଖି କବି କହୁଅଛନ୍ତି ଯେ ରୁକ୍ମିଣୀ ମୁଣ୍ଡବାଳର ଶୋଭା ନିକଟରେ ତାହା ହାରି ଯିବାରୁ (ଅଧୋଭାଗେ) ତଳେ ମୁହଁ ଲୁଚାଇ ଅଛି ।
୧୭ । ମୋତିଜାଲିକା—ସ୍ତ୍ରୀମାନେ ମୁଣ୍ଡରେ ପିନ୍ଧୁଥିବା ଗୋଟିଏ ଅଳଙ୍କାର । ମୁଣ୍ଡର କଳା ବାଳରେ ଧଳାରଙ୍ଗର ମୋତି ଜାଲିକା ଅଳଙ୍କାର ଲଗାଇବାର ଦେଖି କବି ବର୍ଣ୍ଣନା କରି କହୁଅଛନ୍ତି ଯେ, (ନବୀନ) ନୂଆ (ମେହୁ) ମେଘ କୋଳରେ (ତାରାଗଣ) ତାରା ସବୁ (ଶୋଭିଲେ କି?) ଫୁଟି ଉଠିଲେ କି?

ରଞ୍ଜିଲା ସୀଉନ୍ତି ସୀମନ୍ତିନୀ ଗଠନ ।
ମଦନ ମାର୍ଗଣ ମାର୍ଗ ଦେଖି ଯେସନ । ୧୮ ।

ତଥିର ଉପରେ ବାଳୀ ସିନ୍ଦୂର ରଞ୍ଜେ ।
ରବି କି ବନ୍ଦନ ଜାଣି ଅନ୍ଧାରେ ପୁଞ୍ଜେ । ୧୯ ।

ତାହାର ମୁଖକୁ କି ଉପମା ଭୂତଳ ।
ଦେଖି କଳାନିଧି କଲା କ୍ଷୀଣ ମଣ୍ଡଳ । ୨୦ ।

ଦର୍ପଣ ଅଟଇ ଅତି ଜଡ଼ କଠିଣ ।
ତାହାକୁ ଉପମା କପାଁ ଦେବା ମୁଖେଣ । ୨୧ ।

୧୮-୧—ସୀମନ୍ତୀ (କ) । ୧୮-୨—ବାଣ ମାର୍ଗଣ (ଖ) । ୧୯-୨—ରବିଙ୍କ ଯାଇ (କ) । ୨୦-୨—କ୍ଷୀଣ କଲ କଳାନିଧି ମଣ୍ଡଳ (କ) । ୨୧-୨—କସ ।

---

୧୮ । (ସୀମନ୍ତିନୀ) ରୁକ୍ମିଣୀ । ତାଙ୍କ ମୁଣ୍ଡର (ସୀଉନ୍ତି) ସୂତା (ମଦନ) କନ୍ଦର୍ପର (ମାର୍ଗଣ-ମାର୍ଗ) ଶର ମାରିବା ବାଟ ପରି ଦେଖାଉଥାନ୍ତି ଅର୍ଥାତ ଦେଖିଲା ଲୋକର ମନରେ କାମ ଭାବ ଜନ୍ମାଉ ଅଛି ।

୧୯ । (ତଥି ଉପରେ) ସେହି ସୂତା ଉପରେ (ବାଳୀ) ରୁକ୍ମିଣୀ ସିନ୍ଦୂର ଟୋପି ଦେଇ ଅଛନ୍ତି । ତାକୁ ଦେଖିଲେ ମନେହୁଏ, ସତେ ଯେପରି (ଅନ୍ଧାର ପୁଞ୍ଜେ) ଅନ୍ଧାର ରାଶିରେ (ରବି) ସୂର୍ଯ୍ୟ ବନ୍ଧା ପଡ଼ି ଅଛନ୍ତି କି ? ମୁଣ୍ଡ ବାଳ କଳା ହୋଇ ଥିବାରୁ ଅନ୍ଧାର ସଙ୍ଗେ ଏବଂ ସିନ୍ଦୂର ଟୋପି ନାଲି ହୋଇଥିବାରୁ ବାଳସୂର୍ଯ୍ୟ ସଙ୍ଗେ ତୁଳିତ ହୋଇଅଛନ୍ତି ।

୨୦ । (ତାହାର) ରୁକ୍ମିଣୀଙ୍କ ମୁହଁଟି ଦେଖିବାକୁ ଅତି ସୁନ୍ଦର । (ଭୂତଳ) ପୃଥିବୀରେ ତା ସଙ୍ଗେ (ଉପମା) ତୁଳନା କରିବାକୁ ସେପରି କିଛି ଅଛି ନାହିଁ । (କଳାନିଧି) ଚନ୍ଦ୍ର ସେ ମୁହଁର ଶୋଭା ଦେଖି ଆପଣାର (ମଣ୍ଡଳ) ଅବୟବକୁ କ୍ଷୀଣ କରେ । ଚନ୍ଦ୍ରର କ୍ଷୟ ବୃଦ୍ଧି ହେଉଥିବାରୁ କବି ଚତୁରତାର ସହିତ ରୁକ୍ମିଣୀଙ୍କ ମୁଖ ଶୋଭା ସଙ୍ଗେ ସମାନ ନ ହୋଇ ପାରିବାରୁ ଦୁଃଖରେ ହେଉ ବା ଅପମାନରେ ହେଉ ଚନ୍ଦ୍ର ନିଜର ଅଙ୍ଗକୁ ବା ଅବୟବକୁ କ୍ଷୀଣ କରୁଥିବାର ବର୍ଣ୍ଣନା କରିଅଛନ୍ତି ।

୨୧ । (ଦର୍ପଣ) ଅରଶିକୁ ରୁକ୍ମିଣୀଙ୍କ ମୁଖ ସଫା ପଣିଆ ସଙ୍ଗେ ତୁଳନା କରଯାଇ ପାରନ୍ତା । କିନ୍ତୁ ତାହା ଅତି କଠିନ, ରୁକ୍ମିଣୀ ମୁଖ ପରି କୋମଳ ନୁହେଁ । ତେଣୁ ମୁଖସଙ୍ଗେ

କମଳ ମୁଦ୍ରିତ ନିଶା କାଳେଣ ହୋଏ ।
ରୁକ୍ମିଣୀ ମୁଖମଣ୍ଡଳ ସର୍ବଦା ଶୋହେ । ୧୨ ।

ଅଳକା ବେଢ଼ିଣ ମୁଖ ବଶଇ ଶୋଭା ।
ତହିଁକ ଉପମା କସ ଦେବା କ ଅବା । ୧୩ ।

ସଂପୂର୍ଣ୍ଣ ଚନ୍ଦ୍ରମା ମୁଖୁଁ କଳଙ୍କ କାଢ଼ି ।
ଯେବେ ତା ଗଢ଼ନ୍ତା ବହୁ ମଣ୍ଡଳ ବେଢ଼ି । ୧୪ ।

ସେ କାଳ ଚନ୍ଦ୍ରମଣ୍ଡଳ ହେବ ଉପମା ।
ସହଜେ ରୁକ୍ମିଣୀ ମୁଖ ଲାବଣ୍ୟ ସୀମା । ୧୫ ।

ଭ୍ରୂଲତାକୁ ସମ କାହିଁ କୁସୁମ-ଧନୁ ।
ଦେଖିଣ ସହଜେ ଭଜିଅଛି ଅତନୁ । ୧୬ ।

୧୫-୧—ଦେଖା (କ) । ୧୬-୧—ଭ୍ରୂଲତା ମଦନର କ (କ), ୧୬-ତାପସହବେ (କ) ।

---

ତାର ତୁଳନା ହୋଇ ନ ପାରେ ।

୧୨ । (କମଳ) ପଦ୍ମକୁ ତାଙ୍କ ମୁଖସଙ୍ଗରେ କୋମଳ ଓ ସୁନ୍ଦର ହେତୁ ତୁଳନା କରାଯାଇ ପାରନ୍ତା କିନ୍ତୁ ତାହା (ନିଶାକାଳେଣ) ରାତିରେ (ମୁଦ୍ରିତ) ବୁଜି ହୋଇ ଯାଏ ଏବଂ ରୁକ୍ମିଣୀଙ୍କ ମୁହଁଟି ଦିନ କି ରାତି ସବୁ ବେଳେ (ଶୋହେ) ଶୋଭା ପାଉ-ଥାଏ । ତେଣୁ ମୁଖ ସଙ୍ଗେ ତାର ତୁଳନା ଅସମ୍ଭବ ।

୧୩ । (ଅଳକା) ଶ୍ରେଷ୍ଠ ଚୂର୍ଣ୍ଣ କୁନ୍ତଳ ବାଳ ଗୁଡ଼ାକ ରୁକ୍ମିଣୀଙ୍କ ମୁଖକୁ ବେଢ଼ିବାରୁ ତାହା ଯେପରି ସୁନ୍ଦର ଦେଖା ଯାଉଛି, ତାହା ସଙ୍ଗେ ତୁଳନା କରିବାକୁ କି ଉପମା ଅବା ଦିଆ ଯାଇପାରେ ।

୧୪ । (ସଂପୂର୍ଣ୍ଣ ଚନ୍ଦ୍ରମା ମୁଖୁ) ପୂର୍ଣ୍ଣିମା ରାତିର ଗୋଲ ଜହ୍ନ ଦେହରୁ କଳା ଦାଗ ବା କଳଙ୍କ ମାନ କାଢ଼ିନେଇ (ବହୁ) ବଧୂତା ଯଦି ତାକୁ ଆଉଥରେ ଗଢ଼ନ୍ତା, ତେବେ ତାହାକୁ ରୁକ୍ମିଣୀଙ୍କ ମୁଖ ସଙ୍ଗେ ତୁଳନା କରାଯାଇ ପାରନ୍ତା ।

୧୬ । ଫୁଲରେ ତିଆରି ହୋଇଥିବା (କୁସୁମ ଧନୁ) କନ୍ଦର୍ପର ଧନୁ ରୁକ୍ମିଣୀଙ୍କ ଭ୍ରୂଲତା ସଙ୍ଗେ ସମାନ ନୁହେଁ । ସେହି ଅପମାନରେ ସେ (ଅତନୁ) ଅଦେହ ହୋଇଅଛି ଅର୍ଥାତ୍ କନ୍ଦର୍ପର ଦେହ ନାହିଁ । ସେ ଲୋକଙ୍କ ମନରୁ ଜନ୍ମେ ।

ଅଭିନବ କନକ କମଳ ନୟନ ।
ଖଞ୍ଜନ ମଦର ମୀନ ବାଳ ହରଣ । ୨୭ ।

ରୁକ୍ମିଣୀ ନୟନ ଭଙ୍ଗି ପାଇବେ କାହିଁ ।
କଟାକ୍ଷେ ମଦନ ବାଣ ଅଛି ବସାଇ । ୨୮ ।

ଶ୍ରବଣେ ତାଟଙ୍କ ହେମମଣି ନିର୍ମଳ ।
କି ଜାଣି ମଦନରଥ ଚକ୍ର ଯୁଗଳ । ୨୯ ।

ପଦ୍ମ ସଉରଭ ଜାଣି ଶ୍ୱାସ ସମୀର ।
ନାସାକୁ ଉପମା ତିଳ କୁସୁମ ସ୍ଥିର । ୩୦ ।

ଲମ୍ବିତ ଉଦଧିଫଳ ତରଳ ଜାଣି ।
ମୃଗଶଶୀ ଅଙ୍କରେ କି ଜାଣି ରୋହିଣୀ । ୩୧ ।

---

୨୭-୨୮—ରୁକ୍ମିଣୀଙ୍କ ଆଖି ଦିଶୁଛି (ଅଭିନବ) ନୂଆ (କନକ) ସୁନ୍ଦର (କମଳ) ପଦ୍ମ ଫୁଲ ପରି ଦେଖିବାକୁ ଅତି ମନୋହର । ସେ ଆଖିର ଭଙ୍ଗୀ ବା ଛଟା ତୁଳନାରେ (ଖଞ୍ଜନ ମଦର) ମତ୍ତ ଖଞ୍ଜନ ପକ୍ଷୀ, (ମୀନ) ମାଛ ଓ (ବାଳ ହରଣ) ଛୁଆ ହରଣ ପ୍ରଭୃତିଙ୍କର ଆଖି ଛଟା ନିତାନ୍ତ ହୀନ । ଅର୍ଥାତ୍ ଏମାନେ ରୁକ୍ମିଣୀଙ୍କ ଆଖିଛଟା କାହୁଁ ପାଇବେ ? କଟାକ୍ଷେ—ବାଙ୍କ ଚାହାଣିରେ । ମଦନ ବାଣ—କନ୍ଦର୍ପ ବାଣ । ବସାଇ —ବିଷଯୁକ୍ତ କରି ।

୨୯ । ରୁକ୍ମିଣୀଙ୍କ (ଶ୍ରବଣେ) କାନରେ ଥିବା (ହେମ ମଣି ନିର୍ମିତ) ସୁନା ଓ ମଣିରେ ତିଆରି ଉଜ୍ଜ୍ୱଳ (ତାଟଙ୍କ) କାପ ଦିଶୁଛି ଦେଖିଲେ ମନେହୁଏ ସେ ଦିଶୁଛି (ମଦନରଥ) କନ୍ଦର୍ପ ରାଜାଙ୍କ ରଥର (ଯୁଗଳ) ଦିଓଟି ଚକ କି ?

୩୦ । (ଶ୍ୱାସ ସମୀର) ରୁକ୍ମିଣୀଙ୍କ ନାକର ନିଶ୍ୱାସ ପବନ (ପଦ୍ମ ସଉରଭ) ପଦ୍ମ ଫୁଲର ସୁବାସରେ ଭରା । ନାକ ସହିତ (ତିଳକୁସୁମ) ରାଶି ଫୁଲକୁ (ଉପମା) ତୁଳନାରେ ଅତି ହୀନ ବା ସ୍ଥିର ଅଟେ ।

୩୧ । ରୁକ୍ମିଣୀଙ୍କ ନାକରେ (ଲମ୍ବିତ) ଝୁଲୁଥିବା (ଉଦଧିଫଳ) ମୁକ୍ତାର ନୋଲକ ବା ଦଣ୍ଡି ବସଣୀ ଆଦି ଅଳଂକାର ଦେଖିଲେ ମନେହୁଏ ଯେ ତାଙ୍କ ମୁହଁଟି ହେଲା (ଶଶୀ)

ବିମ୍ବଫଳ ହେବ କି ଅଧର ସମାନ ।
ପ୍ରଥମେ ଅଛଇ ସେହୁ ଉପୁଚ୍ଛାଦନ । ୩୨ ।

ପ୍ରବାଳକୁ କହିବା ସେ ଅତି କଠୋର ।
କହିଁ ଗୁଣେ ତୁଲ୍ୟଇବା ଜବା ମନ୍ଦାର । ୩୩ ।

ଭ୍ରମର ଦଂଶିଲେ ହୋଏ ବନ୍ଧୁଳୀ ଭଙ୍ଗ ।
ସେ କାହୁଁ ପାଇବ ତାର ଅଧର ରଙ୍ଗ । ୩୪ ।

ଅତି ମନୋହର ମଧୁ ସୁର-ଅଶନ ।
ସେ କାହିଁ ହୋଇବ ତାର ହାସ ସମାନ । ୩୫ ।

ଦାଡ଼ିମ ଫାଟିଲା ହୁଅ ଦଶନ ଗୃହିଁ ।
ମୋତିବର କରିକୁମ୍ଭେ ପଶିଲା ଯାଇଁ । ୩୬ ।

ବିଜୁଳି ଲୁଚିଲା ଯାଇଁ ସଜଳ ଘନ ।
ତହିଁ କାହିଁ ଶୋଭା କୁନ୍ଦ-କୁସୁମବନ । ୩୭ ।

୩୨-୧—ଉପମା (କ) । ୩୨-୨—ଉମ୍ବର ସୀମା (କ) । ୩୪-୧—ଦେଖିଲେ (କ) ।

---

ଚନ୍ଦ୍ର । ସେ ଅଳଙ୍କାର (ଅଙ୍କରେ) ତାଙ୍କ କୋଳରେ (ରୋହିଣୀ) ତାଙ୍କ ସ୍ତ୍ରୀ କି?

୩୨ । ବିମ୍ବଫଳ—ଗୋରଖିଅ ଫଳ । ଅଧର—ଓଠ । ବିମ୍ବଫଳ ତାଙ୍କ ଓଠ ସଙ୍ଗେ ସମାନ ନୁହେଁ । କାରଣ ସେ ପାଚିଗଲେ (ଉପୁଚ୍ଛାଦନ) ପାଉଁଶିଆ ଦେଖା ଯାଏ ।

୩୩ । ପ୍ରବାଳ—ପୋହଳା । କଠୋର—କଠିନ । ଜବା ମନ୍ଦାର—ଦୁଇଟି ବହଳ ଫୁଲର ନାମ, ଦେଖିବାକୁ ଲାଲ ।

୩୫ । ମଧୁ—ମିଠା । ସୁର ଅଶନ—ଦେବତା ମାନଙ୍କ ଖାଇବା ଦ୍ରବ୍ୟ, ଅମୃତ ।

୩୬ । ଦଶନ—ଦାନ୍ତ । ତୁଅ—ଛାଡ଼ । କରିକୁମ୍ଭେ—ହାତୀ ମୁଣ୍ଡରେ ଥିବା କଳସରେ । ସେଠାରେ ମୋତି ଥାଏ । ବାଣୁଆମାନେ ହାତୀକୁ ମାରି, କୁମ୍ଭରୁ ମୋତି ବାହାର କରନ୍ତି ।

୩୭ । ସଜଳ ଘନ—ପାଣି ଭରା ମେଘ । ରୁକ୍ମିଣୀଙ୍କର ଯେଉଁ ହସ ନକଟରେ ବିଜୁଳି

୨ ରୁକ୍ମିଣୀ

ଗିରିଶିଖେ ରହିଲା ସେ ମାଣିକ୍ୟ କୁଳ ।
ଧରଣୀ ପଶିଲା ହୀରା ହୋଇ ବ୍ୟାକୁଳ । ୩୮ ।

କୋକିଲ ପାଇବେ ଲଜ୍ଜା ଶୁଣିଲେ ବାଣୀ ।
କାମକର ବୀଣା ପରିବାଦନୀ ଜାଣି । ୩୯ ।

ମଦନ ମୁକୁର ଗୃରୁ ଚିବୁକ ଦିଶେ ।
କଣ୍ଠେ ରେଖା ତିନି କମ୍ବୁ ଆକାର କି ସେ । ୪୦ ।

ସୁବଳିତ ବାହୁଯୁଗ ମୃଦୁ ବୃଷାଳ ।
ମୃଣାଳେ ଗୁନ୍ଥିଲା ହେମ ଚମ୍ପକ ମାଳ । ୪୧ ।

୪୦-୧—ମଠ (କ) ।

---

ହାରି ଯାଇ ପାଣିରେ ମେଘତଳେ ଲୁଚନ୍ତି, ସେ ହସ ସଙ୍ଗେ (କୁନ୍ଦ କୁସୁମ ବନ) କୁନ୍ଦ ଫୁଲ ବଣର ଶୋଭା କିପରି ବା ତୁଳନା କରାଯିବ? ଅର୍ଥାତ୍ ତୁଳନା କରା ଯାଇ ପାରିବ ନାହିଁ ।

୩୮ । ମାଣିକ୍ୟ ମଧ୍ୟ ସେ ହସ ସଙ୍ଗରେ ହାରି ଯାଇଁ (ଗିରି ଶିଖେ) ପାହାଡ ଅଗରେ ରହିଲା ଏବଂ ହୀରା ଯାଇଁ (ଧରଣୀ ପଶିଲା) ମାଟି ଭିତରେ ଖଣିରେ ପଶିଲା । ଅର୍ଥାତ୍ ମାଣିକ୍ୟ ଓ ହୀରାର ଝଟକ ରୁକ୍ମିଣୀଙ୍କ ହାସ ସଙ୍ଗେ ସମାନ ନୁହେଁ ।

୩୯ । କୋଇଲି ରୁକ୍ମିଣୀଙ୍କ କଣ୍ଠସ୍ୱର ବା କଥା ଶୁଣିଲେ ଲଜ୍ଜା ପାଇବ, କାରଣ ତାର କୁହୁସ୍ୱର ଅପେକ୍ଷା ରୁକ୍ମିଣୀଙ୍କ କଣ୍ଠସ୍ୱର ଅତି ମଧୁର, ଏବଂ (କାମ କର) କନ୍ଦର୍ପ ହାତରେ ଧରିଥିବା (ପରିବାଦନୀ ବୀଣା) ସପ୍ତସ୍ୱରା ବୀଣାର ସ୍ୱର ପରି ଲାଗେ ।

୪୦ । ଗୃରୁ—ସୁନ୍ଦର । ଚିବୁକ—ଥୋଡ଼ି । (ମଦନ ମୁକୁର) କନ୍ଦର୍ପର ଅଇଁ ଯେପରି ସୁନ୍ଦର ଓ ସଫା, ରୁକ୍ମିଣୀଙ୍କ କଅଁଳ ଥୋଡି ସେହିପରି ସୁନ୍ଦର ଓ ସଫା । କମ୍ବୁ—ଶଙ୍ଖ ।

୪୧ । ସୁବଳିତ—ବଳା ହେଲା ପରି ଗୋଲ । ମୃଦୁ—କଅଁଳ । ବୃଷାଳ—ମୋଟ । ମୃଣାଳ—ପଦ୍ମନାଡ଼ । ହେମ—ସୁନା । ରୁକ୍ମିଣୀଙ୍କ ବାହୁ କଅଁଳ ଓ ବର୍ତ୍ତୁଳ ହୋଇ ଥିବାରୁ କବି ଉତ୍ପ୍ରେକ୍ଷା କରୁ ଅଛନ୍ତି, ପଦ୍ମନାଡ଼ରେ ସୁନା ଚମ୍ପା ଫୁଲ ଗୁନ୍ଥା ହୋଇ ମାଳ କରାଯାଇ ଅଛି କି?

ଅଞ୍ଚଳେ ଗୁନ୍ଥିଲା ଝୁମ୍ପା ଅରୁଣ କଇଁ ।
ମରକତ ବଳୟ କି ଭ୍ରମର ତହିଁ । ୪୨ ।

ଅଙ୍ଗୁଳି-ପଲ୍ଲବେ ଶୋଭା ମୁଦ୍ରିକା ଗଣ ।
କୋକନଦ କୋଷେ ନବ ରବି କିରଣ । ୪୩ ।

କରିକୁମ୍ଭ ପ୍ରାୟେକି ବିପୁଳ ବିସ୍ତୀର୍ଣ୍ଣ ।
ହୃଦୟକୁ ଅବୋରି ବଢ଼ିଲା ଯୌବନ । ୪୪ ।

ମଦନ ମଙ୍ଗଳ ସ୍ୱର୍ଣ୍ଣ କଳସ ଦିଶେ ।
ଗିରିଶୃଙ୍ଗ ଜାଣି ଦୁହେଁ ବଢ଼ିଲେ କି ସେ । ୪୫ ।

ପରଶରେ ଦେଖାଇଲେ ନିଜ ଗାରିମା ।
କଳନ୍ଧ ଘେନଲେ ମଧ୍ୟ ଲଙ୍ଘିଲେ ସୀମା । ୪୬ ।

୪୬-୧—ଗରିମା (ଖ) । ୪୫-୧—ମଙ୍ଗଳ ପୂର୍ଣ୍ଣ (କ) କି ସେ (ଗ) ।

---

୪୨ । ସେହି କନ୍ୟାର ହାତର (ଅଞ୍ଚଳେ) ଶେଷ ଭାଗରେ ଥିବା ହାତପାପୁଲି (ଅରୁଣ) ନାଲ କଇଁ ଫୁଲର ଝୁମ୍ପା ପରି ହୋଇଛି ଏବଂ ହାତରେ ଘେନି ଥିବା ମରକତ ମଣିର (ବଳୟ) ଖଡୁ ସେ କଇଁ ଫୁଲରେ ଭଅଁର କି?

୪୩ । ଅଙ୍ଗୁଳି ଗୁଡ଼ିକ ହେଲା (ପଲ୍ଲବ) କଅଁଳିଆ ପତର । ତହିଁରେ ଘେନି ଥିବା (ମୁଦ୍ରିକା ଗଣ) ମୁଦି ଗୁଡ଼ିକ (କୋକନଦ କୋଷେ) ରକ୍ତପଦ୍ମ ଭିତରେ ପଡ଼ିଥିବା (ନବ ରବିକିରଣ) ସକାଳ ସୂର୍ଯ୍ୟଙ୍କ କିରଣ କି?

୪୪ । (କରିକୁମ୍ଭ) ହାତୀ ମୁଣ୍ଡର କଳସ ପରି ବଡ଼ ବଡ଼ (ଯୌବନ) କୁଚ ଦୁଇଟି (ହୃଦୟକୁ) ଛାତି ଗୋଟାକ ଯାକ ଅବୋରି ଯେତେବେଳେ ବଢ଼ିଲେ—

୪୫ । ସେତେବେଳେ ମନେ ହେଲା, ସେ ଦୁଇଟି (ମଦନ) କନ୍ଦର୍ପର (ମଙ୍ଗଳ ସ୍ୱର୍ଣ୍ଣକଳସ) ଶୁଭଯାତ୍ରା ଉଦ୍ଦେଶ୍ୟରେ ବସିଥିବା ସୁନାର କଳସ କି? (ଗିରିଶୃଙ୍ଗ) ପର୍ବତର ଅଗ୍ରଭାଗ ଯେପରି କ୍ରମେ କ୍ରମେ ବର୍ଦ୍ଧିତ ହୁଏ, ସେହିପରି ସେ କୁଚ ଦୁଇଟି କ୍ରମେ ବଢ଼ିବାକୁ ଲାଗିଲେ ।

୪୬ । ଗରିମା—ବଡ଼ ପଣିଆ ।

କେମନ୍ତେ ଜାଣିମା କ୍ଷୁଦ୍ର ନାହିଁ କି ଅଛୁ ।
କାମ କଉଡ଼ିଭୁକୀ ହେନ ରଶନା ରଖି । ୪୭ ।

ରୋମାବଳୀ ଛଳେ ସୂକ୍ଷ୍ମ ମରକତର ।
ସଧୀରେ ବାହନ୍ତି ତହିଁ ନାହିଁ ଅନ୍ତର । ୪୮ ।

ଭୂଷଣ ହୃଦରେ ନବ ମୁକ୍ତା ମାଳ ।
କି ଜାଣି ନକ୍ଷତ୍ର ମଧ୍ୟେ ସ୍ଥିର ବିଜୁଳି । ୪୯ ।

ନାଭ-ସରୋବରେଣ ତ୍ରିବଳୀ ଶୋଭନ ।
ରତି ସଙ୍ଗେ କାମ ଯହିଁ କରଇ ସ୍ନାନ । ୫୦ ।

କଟିଭାଗ ମହାଦେବ ଡମ୍ବରୁ ମତ ।
କଣ୍ଠୀରବ ପଳାଇ ପଶିଲା ପର୍ବତ । ୫୧ ।

୪୮-୧—ମତୀ (ଗ) । ୪୯-୧—ମଧ୍ୟରେ (ଗ) । ୪୯-୨—ନକ୍ଷତ୍ର ମେଳେ ଥିର (ଗ) ।
୫୦-୧—ସରୋବରକୁ (କ) । ୫୦-୨—ରତିରଙ୍ଗେ (ଖ) । ୫୧-୨—ଦେଖି ପଳାଇଲା (ଖ) ।

---

୪୭ । କାମ—କନ୍ଦର୍ପ । କଉଡ଼ିଭୁକୀ—କଉଡ଼ିଭୁକ ହୋଇ ; ହେନ—ଏହିପରି ।

୪୮ । ରୋମାବଳୀ—ନାଭି ସନ୍ଧିରେ ଥିବା ଲୋମ ଧାଡ଼ି ।

୪୯ । ହୃଦୟ—ଛାତି । ଗୋରା ଛାତିରେ ମୁକ୍ତା ମାଳ ପିନ୍ଧିବାରୁ ମନେ ହେଉଛି ଯେ ତାରାମାନଙ୍କ ଭିତରେ ସ୍ଥିର ବିଜୁଳି ଖେଳୁଛି କି ? ଦେହର କାନ୍ତି ବିଜୁଳି ଏବଂ ମୁକ୍ତା ମାଳା ତାରା ହାର ସଙ୍ଗେ ତୁଳନା କରା ଯାଇଅଛି ।

୫୦ । ନାଭି-ସରୋବରେଣ—ନାଭି ହେଉଛି ଗୋଟିଏ ପୋଖରୀ, ତା ଭିତରେ । ତ୍ରିବଳୀ—ପେଟରେ ଥିବା ମୋଡ଼ୁଅ ।

୫୧ । ମହାଦେବଙ୍କ ଡମ୍ବରୁର ମଝି ଯେପରି ସରୁ, ରୁକ୍ମିଣୀଙ୍କ କଟି ବା ଅଣ୍ଟା ସେହିପରି ସରୁ । (କଣ୍ଠୀରବ) ସିଂହର ଅଣ୍ଟା ସରୁ । କିନ୍ତୁ ରୁକ୍ମିଣୀଙ୍କ ଅଣ୍ଟା ତାଠାରୁ ବଳି ଅଧିକ ସରୁ ହୋଇ ଥିବାରୁ ସିଂହ ପଳାଇ ଯାଇ ପର୍ବତ କନ୍ଦରରେ ପଶିଛି ।

୫୨ । ରୁକ୍ମିଣୀଙ୍କ ଅଙ୍ଗ ସଙ୍ଗେ କଣ ବା ଉପମା ଦେବା ! କେତକୀ ଫୁଲକୁ ତୁଳନା କଲ

ଅଙ୍ଗକୁ ଉପମା ତାର ଦେବାକ କସ ।
କେତକୀ ପାଣ୍ଡୁର ରୁଚ ପୁଣ କର୍କଶ । ୫୨ ।

ପୁଣ ପୁଣ ଅନଳେ ଝାସଇ ସୁବର୍ଣ୍ଣ ।
ନ ପାଇଲା କେବେହେଁ ତା ଶରୀର ବର୍ଣ୍ଣ । ୫୩ ।

ମୃଦୁଲ ଭାବକୁ ତାର ଶିରୀଷ କାହିଁ ।
ଶୀତ ଉଷ୍ଣଭାବ ଋତୁଭେଦ ନ ପାଇ । ୫୪ ।

ବିପୁଲ ନିତମ୍ବ ଜାନୁ ପୃଥୁଲ ଜାଣ ।
ମଦନ ସ୍ୱୟଂର ସିଂହାସନ ଘଟଣ । ୫୫ ।

କସ ପଟାନ୍ତର ଜାନୁଯୁଗ ଅରମ୍ଭ ।
ମଦନ-ରତ୍ନମନ୍ଦିର-ମାଣିକ-ଖମ୍ବ । ୫୬ ।

୫୩-୨—କେବେହେଁ (ଖ) ।

---

ସାନ୍ଧା, କିନ୍ତୁ ତା'ର (ରୁଚ) କାନ୍ତି ପାଣ୍ଡୁର ଏବଂ କରକରିଆ ।

୫୩ । (ସୁବର୍ଣ୍ଣ) ସୁନା ଥରକୁ ଥର (ଅନଳରେ) ନିଆଁରେ ପୋଡ଼ି ହୋଇ ମଧ୍ୟ ରୁକ୍ମିଣୀଙ୍କ ଦେହର ରଙ୍ଗ ସଙ୍ଗେ ସମାନ ହୋଇ ପାରି ନାହିଁ ।

୫୪ । ମୃଦୁଲ ଭାବ—ମୃଦୁଲତା ବା କୋମଳତା । ରୁକ୍ମିଣୀଙ୍କ ଦେହର କୋମଳତା ସଙ୍ଗେ ଶିରୀଷ ଫୁଲ ସମାନ ନୁହେଁ । କାରଣ ରୁକ୍ମିଣୀ ଶ୍ୟାମା ସ୍ତ୍ରୀ ହୋଇଥିବାରୁ ଶୀତ ଗ୍ରୀଷ୍ମ ଆଦି (ଋତୁଭେଦ) ବଦଳିବା ଦ୍ୱାରା ଗରମ ଓ ଥଣ୍ଡା ଗୁଣ ବହନ କରନ୍ତି ଅର୍ଥାତ୍ ତାଙ୍କ ଦେହ ଖରା ଦିନେ ଥଣ୍ଡା ଏବଂ ଶୀତ ଦିନେ ଗରମ, କିନ୍ତୁ ଶିରୀଷ ଫୁଲର ଏ ଗୁଣ ନାହିଁ ।

୫୫ । ନିତମ୍ବ—ପିଚା । ଜାନୁ—ଜଙ୍ଘ । ପୃଥୁଳ—ମୋଟା । ଘଟଣ—ସୁନ୍ଦର । ମଦନସ୍ୱୟଂର—କନ୍ଦର୍ପ ରଜାର ।

୫୬ । ପଟାନ୍ତର—ତୁଳନା । ଅରମ୍ଭ—ଶୋଭା । ରୁକ୍ମିଣୀଙ୍କ ଜଙ୍ଘ ଯୋଡ଼ିକର ଶୋଭା ସହିତ କାହାକୁ ତୁଳନା କରାଯିବ? କନ୍ଦର୍ପର ରତ୍ନରେ ଗଢା ହୋଇଥିବା ଦେଉଳରେ ମାଣିକ୍ୟ ଖମ୍ବ ପରି ସେ ଜଙ୍ଘ—ଏହାହିଁ ମନେ ହୁଏ ।

କରଭ କଲଭ କର-କର କର୍କଶ ।
କଦଳୀ କେବଳ ମାତ୍ର ସଲିଳ-ରସ । ୫୭ ।

କୋକନଦ କାନ୍ତି ପଦ୍ମପାଦର ତଳ ।
ଏକୁ ଏକ ନଖରୁଚି ଦର୍ପଣୁଁ ଝଳ । ୫୮ ।

ଲକ୍ଷା ଏ ଲହଲ ପାଦ ନଖର ସୀମା ।
ସନ୍ଧ୍ୟାପ୍ରେ ଉଦୟେ କି ଶରଦ ଚନ୍ଦ୍ରମା । ୫୯ ।

ଅଙ୍ଗ ଅଙ୍ଗ ଶୋଭାବନ ଲାବଣ୍ୟରାଶି ।
ନାରାୟଣ ମୋହିବାକୁ ମୋହନ ଫାଶି । ୬୦ ।

ଚରଣେ ନୂପୁର ମଣି କିଙ୍କିଣୀ ବାଜେ ।
ବଚଳ କାମ୍ବୁଲି ଝୀନ ପଡନୀ ସାଜେ । ୬୧ ।

୬୦-୨—ମଦନ ଫାଶି (କ) ।

---

୫୭ । କରଭ—ହାତ ଅଙ୍ଗୁଠି ଠାରୁ ମଣିବନ୍ଧ ପର୍ଯ୍ୟନ୍ତ ହାତ ପାପୁଲିର ଭାଗ । କଲଭ—ହାତୀ ଛୁଆ । କର-କର—ହାତୀ ଛୁଆ ଏବଂ ବଡ଼ ହାତୀର ଶୁଣ୍ଢ । କର୍କଶ—ଖସଖସିଆ ବା ଟାଣୁଆ ।

୫୮ । କୋକନଦ କାନ୍ତି—ରକ୍ତ ପଦ୍ମର ରଙ୍ଗ ପରି ରଙ୍ଗ । ପଦ୍ମପାଦର ତଳ—ପଦ୍ମ ପରି ସୁନ୍ଦର ହୋଇଥିବା ପାଦ, ତାର ତଳ ଅର୍ଥାତ୍ ଗୋଡ଼ ତଳିପା । ନଖରୁଚି—ନଖର ଶୋଭା । ଦର୍ପଣୁଁ—ଆଇନା ଠାରୁ ବଳି ।

୫୯ । ଲକ୍ଷା—ଅଳତା । ପାଦରେ ନଖ ଗୁଡ଼ିକ ଦର୍ପଣ ପରି ଝଟକୁଛି । ସେଥିରେ ପୁଣି ଗୋଡ଼ରେ ଅଳତା ଲଗାଇବାରୁ ମନେ ହେଉଛି— ସନ୍ଧ୍ୟାବେଳର ନାଲିଆ ଆକାଶ ତଳେ ଶରତ କାଳର ଚନ୍ଦ୍ର ଉଇଁ ଆସୁଛି କି? ଶରତ କାଳରେ ସନ୍ଧ୍ୟାବେଳେ ଆକାଶ ସବୁ ସମୟ ଅପେକ୍ଷା ଅଧିକ ନାଲି ଦେଖାଯାଏ । ଗୋଡ଼ର ଅଳତା ସଙ୍ଗେ ତାହାର ତୁଳନା କରି ଯାଇଅଛି ।

୬୦ । ଲାବଣ୍ୟ ରାଶି—ଶୋଭା ସମୂହ ।

୬୧ । ଚରଣେ—ପାଦରେ । ନୂପୁର—ଝୁଣୁ ଝୁଣୁ ଶବ୍ଦ କରୁଥିବା ପାଦର ଅଳଙ୍କାର

କରି ରାଜହଂସ ଜିଣି ଗମନ ଲୀଳା ।
ସଙ୍ଗେ ସଖୀଗଣ ଘେନି ଚଳଇ ବାଳା । ୬୨ ।

ଚୋଟା ଚଳି ନୃପଙ୍କି ଭେଟିଲ ଯାଇଁ ।
ଦେଖିଲ ରୁକ୍ମଣୀ ରୂପ ସେଠାରେ ଥାଇ । ୬୩ ।

ଚର ମୁଖୁଁ ଏସନେକ ଶୁଣି ଶ୍ରୀଧର ।
ରୁକ୍ମଣୀ ସ୍ୱରୂପ ମନେ ଭାବନା କର । ୬୪ ।

ଅତ ରସମୟ ଏହୁ ତୃତୀୟ ଛାନ୍ଦ ।
ଗାଇଲ୍ କାର୍ତ୍ତିକ ଦାନ ହୋଇ ଆନନ୍ଦ ।୬୫ ।

---

ବିଶେଷ । ଛାନ୍ଦ ପଠନ—ସ୍ୱର୍ ଲୁଗା ।

୬୨ । ଶବ୍ଦାର୍ଥ  ଲୀଳା—ଚଳିବାର ଛଟା । କରି—ହାତୀ । ରାଜହଂସ—ଶ୍ରେଷ୍ଠ ହଂସ ।
ହାତୀ ଓ ରାଜହଂସ ମାନେ ଯେପରି ଭଳ ଭଳ ଧୀରେ ଧୀରେ ଚାଲନ୍ତି, ରୁକ୍ମିଣୀ
ତାଠାରୁ ବଳି ଦୋହଲି ଦୋହଲି ଚାଲନ୍ତି ।

# ଚତୁର୍ଥ ଛାନ୍ଦ

ରାଗ—ଦେଶାକ୍ଷୀ

ଏଥି ଅନନ୍ତରେ ଶୁଣ ଚତୁର୍ଥ ଛାନ୍ଦ ଅଦେୀଣ
ରୁକ୍ମିଣୀର ରୂପ ଶୋଭା ଦେଖିଣ ରାଜ୍ୟେ
ପୁତ୍ରଙ୍କୁ ହକାର କେଇ ଏକାନ୍ତେ ବସିଲେ ଯାଇଁ
ଭଗ୍ନୀକ କରବା ଚୋର ବଭ୍ର ଉପାୟେ
ଅଛୁ ଆମ୍ଭ କୁଳ ଧର୍ମେଣ
ସ୍ୱୟମ୍ବର କର ରାଜାମାନଙ୍କୁ ଆଣ । ୧ ।

ନୃପତିର ଆଜ୍ଞା ପାଇ ରୁକ୍ମ ବସିଲା ଯାଇ
ଦୂତମାନ ବରଗିଲା ସକଳଠାରେ
ବିଚିତ୍ର ସଭା ରଚଣି କରାଇଲେ ତତକ୍ଷଣି
ଅନେକ ସମ୍ଭାର ଅଣି ଥୋଇଲେ ପୁରେ
ଅଇଲେକ ସକଳ ରାଜା
ବାଜଇ ବିବିଧ ବାଦ୍ୟ ନିଶାଣ ବାଜା । ୨ ।

ଦନ୍ତବକ୍ର ଜରାସନ୍ଧ ଦମଘୋଷ ସୁତ ମନ୍ଦ
ଅନେକ ଦେଶର ରାଜା ଅଇଲେ ବାହୁ
ମୈନ୍ଦ୍ର ରାଜା ଭଗଦତ୍ତ କାଶୀପତି ପୁଣ୍ଡ୍ରଶ୍ରୀକ

ସପନ ଚେତଅ ବାଣୀ (ଖ) । ୧-୪—ଢଳ ଘୋହର (କ) । ୨-୨—ବନ୍ଧୁଦେଶରେ (କ) । ୨-୪—ଥୋଇଲେ ଘରେ (ଖ) । ୩-୨—ଭୁବନ ଦେଶର (କ) ୩-୪—ଅଇଲେ ସମସ୍ତ ବାହୁ (ଖ) ।

---

୨—ବରଗିଲ—ପଠାଇଲ । ନିଶାଣ—ନାଗରା ।
୩—ଦମଘୋଷ ସୁତ—ଶିଶୁପାଳ । ମନ୍ଦ—ଦୁଷ୍ଟ ।

ଅଇଲେ ସମ୍ଭାର ହୋଇ ରୁକ୍ମିଣୀ ପାଇଁ
ସିଂହାସନେ ବସିଲେ ରାଜ୍ୟେ
ଷଡ଼ ଅର୍ଘ୍ୟ ଦେଇଣ ସନ୍ତୋଷ କରାଜ୍ୟେ । ୩ ।

ହାଥୀ ରଥୀ ଅଶ୍ୱୁଆର ଯେତନେଣ ରୁକ୍ମଣ ବୀର
ନୃପତମାନଙ୍କୁ ଯାଇଁ ଭେଟ ହୋଇଲେ
ଅଇଲେ ସକଳ ରାଜ୍ୟେ ଏଥେ ଆଉ କସ ଉଜ୍ୟେ
ଆଜ ସ୍ୱୟମ୍ବର ସଭା ହୋଉ ବୋଇଲେ
ଯୋଗାଇଲା ସବୁର ତତ୍ତ୍ୱ
ଶୁଭୁଅଛୁ ସବୁ ଦଗେ ମଙ୍ଗଳ ଗୀତ । ୪ ।

ଗୋବନ ଛାମୂରେ ଯାଇଁ ଡଗର ବେଗେ ଜଣାଇଁ
ରୁକ୍ମିଣୀର ସ୍ୱୟମ୍ବର ହୋଇବ ଆଜ
ଶୁଣିଣ ମଧୁସୂଦନ ହୋଇଣ ଉତ୍ସୁକ ମନ
ଗରୁଡ଼ ପିଠିରେ ବଜେ ଦେବଙ୍କ ରାଜ
ମିଳଲେକ ବଦର୍ଭ ପୁରେ
ରାଜାମାନେ ବସିଛନ୍ତି ସିଂହାସନରେ । ୫ ।

ହସି ବୋଲେ ଶିଶୁପାଳ ଏଥି ତ ଆସି ଗୋପାଳ
ରାଜା ସଭା ବୋଲଣ କ ନ ଜାଣେ ସେହୁ
ଅଇଲା କେବଣ କାର୍ଯ୍ୟ ପାଇବ କେବଳ ଲାଜ

୪-୨—ଏଥି ଛନ୍ଦ ନାହିଁ ଉଦ୍ୟେ (କ), ୫-୨—ଚଞ୍ଚଳ ମନ (କ), ୬-୨—ସେ ଜାଣଇ ନାହିଁ (ଖ) । ୬-୪—ଜାହିଁ ବୋଲ (କ) ।

୪ । ହାଥୀ—ହାତ ଅର୍ଥାତ୍ ହାତୀରେ ଚଢିଥିବା ମନ୍ୟ । ରଥୀ—ରଥରେ ଚଢିଥିବ ସନ୍ୟ । ଅଶ୍ୱୁଆର—ଘୋଡ଼ାର ଚଢ଼ିଥିବା ସନ୍ୟ ।

ଲାଜ ଅବା ଭୟ ବୋଲି ଜାଣଇ ନାହିଁ
ସବୁଠାରେ ଅକାଣ୍ଡକାଙ୍କ୍ଷୀ
ପାପ ପୁଣ୍ୟ ଭୟ ଛାଡ଼ା ନ ଜାଣେ ହର । ୬ ।

କୃଷ୍ଣଙ୍କୁ ଦେଖିଣ ତହିଁ    ବସି ତ ନ ଦେଲେ କେହି
ଗରୁଡ଼ ପିଠିରେ ବଜେ ଲାବଣ୍ୟଖଣି
ସଉଧ ମେଢ଼ରେ ଥାଇ    ରୁକ୍ମିଣୀ ଦେଲା ଅନାଇ
ଅନଙ୍ଗ ଖେଦ ଜଳରେ ହୋଇଲେ ଭାସି
ସନ୍ନିଧରେ କମଳା ଥିଲା
ଆନନ୍ଦେ ବୋଇଲା ସଖି ବର ଅଇଲା । ୭ ।

ରୁକ୍ମିଣୀ ଦେଲେ ଅନାଇ    ଶ୍ରୀକୃଷ୍ଣ ଅଟନ୍ତି ଏହି
ଦେଖୁ ଅଛନ୍ତି ଶ୍ୟାମସୁନ୍ଦର ଅଙ୍ଗ
ସୁନ୍ଦର ଭୂଲତା ହୁଇ    ଆଖି ପଦ୍ମ ସରି ନୋହି
ନାସିକା ସୁସଜ୍ଞ ଭଙ୍ଗ ଅଧର ରଙ୍ଗ
ଶ୍ରବଣେ ମକର କୁଣ୍ଡଳ
ମୁଖକୁ ସମାନ କାହିଁ ଚନ୍ଦ୍ର ମଣ୍ଡଳ । ୮ ।

୬-୭—ଚକ୍ରାଢ଼ ବଉ (ଗ) । ୮-୯—ପଦ୍ମ ସମ (ଖ) ।

---

୬ । ଅକାଣ୍ଡକାଙ୍କ୍ଷୀ—ଅନ୍ୟାୟ କରିବା ଲୋକ ।

୭ । ଲାବଣ୍ୟ ଖଣି—ସୁନ୍ଦର ମାନଙ୍କର ସମୂହ ଅର୍ଥାତ୍ ଅତ୍ୟନ୍ତ ସୁନ୍ଦର । ସଉଧ—କୋଠାଘର । ଅନଙ୍ଗ ଖେଦ—କାମ ଦୁଃଖ । ସନ୍ନିଧରେ—ନିକଟରେ ।

୮ । ସୁସଜ୍ଞ—ସୁଗଠନ (ଉତ୍ତମ ରୂପେ ତିଆରି) । ଶ୍ରବଣେ—କାନରେ । ମକର—ମଗର ଆକୃତି ।

ମଉଳ ମଣି ମୁକୁଟ          କଟୀତଟେ ପୀତପଟ
ବିପୁଳ ହୃଦରେ ବନମାଳା ଶୋଭୁଛି
ଇଷିତ ମଧୁର ହାସ          ଦଶନ ଜ୍ୟୋତ ପ୍ରକାଶ
ଅଖିଳ କାମସ୍ତ୍ରୀ ବୃନ୍ଦ ଚିତ୍ତ ମୋହୁଛି
ବିରଳେ ମୁଁ ନମସ୍ୟେ ବର
ଦଇବ ସୁମୁଖ ହୋଇ ଏସନ କର । ୯ ।

ବସି ତ ଠାବ ନ ପାଇ          ହସିଣ କମଳାସାଇଁ
ବିନତା-ସୁତଙ୍କୁ ଆଜ୍ଞା ଦେଲେ ଗୋବିନ୍ଦ
ଭାଙ୍ଗ ଏହୁ ସ୍ୱୟମ୍ବର          ରୁକ୍ମିଣୀ ଅଟେ ଅମ୍ଭର
କେବେ ବୋଲି ଅସିଛନ୍ତି ନୃପତି ବୃନ୍ଦ
ପକ୍ଷିରାଜ ପକ୍ଷୀ ଉଡ଼ାଇ—
ଦେଲେକ କେ କେଣେ ଉଡ଼ି ପଡ଼ିଲେ ଯାଇ । ୧୦ ।

ବାହୁଡ଼ିଲେ ପୀତବାସ          ଦେଖିଲେ ସେ କଉଶିକ
ସାଷ୍ଟାଙ୍ଗେ ପଡ଼ିଣ ଉଭା ଯୋଡ଼ିଣ କର
ଏ ମୋହୋର ସିଂହାସନ          ବିଜେ କର ଭଗବାନ

୯-୨—ଦଶନ କାନ୍ତି (ଗ) । ୯-୬—ସମ୍ମୁଖ ହୋଇ, ଏମନ୍ତ କର (ଢ) । ୧୦-୩—ଭଙ୍ଗ (ଖ) । ୧୦-୪—ନୃପନ୍ତ ମନ (ଖ) । ୧୧-୪—ଭୂମି ପଡ଼ି ପାଦେଣ (ଖ) ।

---

୯ । ମଉଳ—ମସ୍ତକରେ । ତଟେ—ପ୍ରଦେଶରେ । ପୀତପଟ—ହଳଦିଆ ପାଟ । ବିପୁଳ—ବଡ଼ । ଇଷିତ—ଅଳ୍ପ ଅଳ୍ପ । ଦଶନ—ଦାନ୍ତ । ଅଖିଳ କାମସ୍ତ୍ରୀ ବୃନ୍ଦ—ସମସ୍ତ ରସିକା ସ୍ତ୍ରୀ ସମୂହ । ସୁମୁଖ – ସୁପ୍ରସନ୍ନ ।

୧୦ । କମଳାସାଇଁ—ଶ୍ରୀକୃଷ୍ଣ । ବିନତାସୁତ—ଗରୁଡ଼ । ନୃପତି ବୃନ୍ଦ—ସମସ୍ତ ରଜା । ପକ୍ଷିରାଜ—ଗରୁଡ଼ ।

୧୧ । ପୀତବାସ—ଶ୍ରୀକୃଷ୍ଣ । କଉଶିକ—କଉଶିକ ନାମରେ ରଜା । କର—ହାତ ।

ରାଜଲକ୍ଷ୍ମୀ ଦେଇ ମୁହିଁ ତବ ପାଦେଣ
ଅଜ୍ଞାନ ଏ ନୃପତି ବୃନ୍ଦ
ଜଡ଼ ମୂଖ ବୋଲନ୍ତି ଅକୁଳ ଗୋବିନ୍ଦ । ୧୧ ।

ବ୍ରହ୍ମା ଇନ୍ଦ୍ର ମହାଦେବ ନ ଜାଣନ୍ତି ତୁମ୍ଭ ଭାବ
ଏ ଛାର ମନୁଷ୍ୟ ରାଜା ଜାଣିବେ କାହିଁ
ତୁମ୍ଭ ଚରଣାରବିନ୍ଦ କୃପାରସ ମକରନ୍ଦ
ଯେବଣ ପ୍ରାଣୀଙ୍କି ଦେଇ ଅଛ ଗୋସାଇଁ
ସେ ଜାଣନ୍ତି ତୁମ୍ଭ ମହିମା
ତୁମ୍ଭର ମହିମା ପୁଣ ଅନନ୍ତ ସୀମା । ୧୨ ।

ରାଜାଗଣ ପାଇ ଦଣ୍ଡ ପୁଣିହିଁ ହୋଇଲେ ଗୁଣ୍ଡ
ଭୀଷ୍ମକ କଟକେ ଆସି ସଉଦ୍ଧେଁ ବସି
ଏସନ ସମୟେ ତହିଁ ଇନ୍ଦ୍ର ଆଜ୍ଞା ଶିରେ ବହି
ସଭାର ମଧରେ ଦୂତ ମିଳଲା ଆସି
ଶୁଣ ସୁରପତିର ଆଜ୍ଞା
ମଜ୍ଜନ ପଡ଼ିବ ବଜ୍ର କଲେ ଅବଜ୍ଞା । ୧୩ ।

ଜରାସନ୍ଧ ଶିଶୁପାଳ ଦନ୍ତବକ୍ତ୍ର ସାଲୁ ବୀର
ଏହାଙ୍କୁ ଛାଡ଼ିଣ ସବୁ ନୃପତି ଯିବ
ରାଜା କଉଶିକ ପୁର ଅଛନ୍ତି ଯେ ଚକ୍ରଧର

୧୨-୭—ପୁଣ (ଗ) । ୧୩-୧—ରାଜାମାନେ (ଗ) ।୧୩-୨—ବସି ବାହୁଡ଼ (କ) ।

---

୧୨ । ଚରଣାରବିନ୍ଦ—ପାଦପଦ୍ମ; ମକରନ୍ଦ—ପୁଷ୍ପରସ; ଅନନ୍ତ ସୀମା—ଅସୀମ ।
୧୩ । ସୁରପତି—ଇନ୍ଦ୍ର ; ମଜ୍ଜନ—ମୁଣ୍ଡରେ ।

ରାଜଇନ୍ଦ୍ର ଅଭିଷେକ ତୁମ୍ଭେ କରିବ
ଭୃତ୍ୟଭାବେ ଥିବ ସଭିଏଁ
ଜଗତ ପାଳିବେ ରାମ ଗୋବିନ୍ଦ ଦୁହେଁ । ୧୪ ।

ଦେବଦୂତ ଆଜ୍ଞା ପାଇ    ସମସ୍ତେ ଗଲେ ଚଳାଇ
କଉଶିକ ପୁରେ ଯାଇଁ ପ୍ରବେଶ ହୋଇ
ଶ୍ୱେତଛତ୍ର ଖାରବର    ବାନା ଉଡ଼େ ଫରହର
ଦର୍ଶନ କଲେକ ନଉଛଳ ପକାଇ
ସିଂହାସନେ ବସେ ଗୋବିନ୍ଦ
ସେବାରେ ରହିଲେ ସବୁ ନୃପତିବୃନ୍ଦ । ୧୫ ।

ଆକାଶେଣ ଦେବ ଇନ୍ଦ୍ର    ସଙ୍ଗତେ ଦେବତା ବୃନ୍ଦ
ଦୁନ୍ଦୁଭି ବଜାଇ ପୁଷ୍ପ ବରଷା କଲେ
ଆଣି ସୁରନଦୀ ନୀର    ଅଭିଷେକ କଲେ ଶିର
ଅପସରାମାନେ ନୃତ୍ୟ ଗୀତେ ଖଟିଲେ
ସୁରପୁର କିନ୍ନର ଗଣ
ଆପଣେ ବାଦ୍ୟକ ଉଭା ଛନ୍ଦ ଧରଣ । ୧୬ ।

ବଟିଲକ ଅଭିଷେକ    ବାହୁଡ଼ିଲେ ସବୁଲୋକ
କୋଟି କୋଟି ରତ୍ନମାନ ରାଜାଙ୍କୁ ଦେଲେ
ଜରାସନ୍ଧ ପୁତ୍ର ରାଜା    ତାହାଙ୍କୁହିଁ ଦେଲେ ପୂଜା
ଦ୍ୱାରକା ପୁରକୁ ବୋଲି ଚଳାଇ ଗଲେ
ଏଥୁ ଅନନ୍ତରେଣ ଶୁଣ
ଜରାସନ୍ଧ ଯେନ ବଶ୍ୱରଇ ରୁକ୍ମଣ । ୧୭ ।

୧୬-୪—ଅପସରାଗଣେ ଗୀତ ନୃତ୍ୟ (ଖ) । ୧୬-୫—ସୁରପୁର (ଖ) । ୧୭-୬—ଏହାଙ୍କ (ଖ)

---

୧୪ । ଭୃତ୍ୟଭାବେ—ଚାକର ରୂପରେ । ୧୫ । ନଉଛଳ—ଦର୍ଶନ । ୧୬ । ବୃନ୍ଦ—ସମୂହ, ଦୁନ୍ଦୁଭି – ଦେବ ବାଜା, ସୁରନଦୀନୀର—ଆକାଶଗଙ୍ଗା ପାଣି, ଶିର—ମସ୍ତକରେ ।

ବୋଲଇ ସେ ଜରାସନ୍ଧ          କଲ ସ୍ୱୟମ୍ବର ମନ୍ଦ
ଆଉ ସ୍ୱୟମ୍ବର ଥରେ ଯୋଗାଇ ନାହିଁ
ବଡ଼ ରାଜାମାନେ ଛନ୍ତି          ତହୁଁ ଏକ ବର ବାଛି
କରାଇବା ବିଭା ଅମ୍ଭେ ସମସ୍ତେ ଥାଇଁ ।
ଗୋବିନ୍ଦହିଁ ଶୁଣିବେ ଯେବେ
ଏଥକୁ କପଁାଇ ଆଉ ଆସିବେ ତେବେ । ୧୮ ।

ରୁକ୍ମଣ ବୋଇଲା ତହିଁ,          ବର ମୁଁ ଅଛୁ ଚାଆଇ
ଯେବେ ଯୋଗାଇ ତୁମ୍ଭମାନଙ୍କ ଚିତ୍ତ
ଚନ୍ଦ୍ରମକୁଳେ ସମ୍ଭୂତ          ଦମଘୋଷ ରାଜାସୁତ
ବିଶେଷେ ଅଟଇ ଏ ତ ସବୁରୁ ହିତ
ଜରାସନ୍ଧ ବୋଇଲା ଶୁଣି
ଯୋଗାଇଲା ବର ବିଭା କର ରୁକ୍ମଣୀ । ୧୯ ।

ରୁକ୍ମଣୀ ବାରତା ପାଇ          ସଖୀମାନ ହକାରଇ
ବୋଇଲେ ଛାଡ଼ିଲି ମୋର ଜୀବନ ଆଶ
ହରି ହରି ବୋଲି ବାଳୀ          ଅବନୀ ପଡ଼ିଲା ଢଳି
ଅସମ୍ଭାଳ କେଶଭାର ହୃଦୟ ବାସ
ମନବୁଦ୍ଧି କାନ୍ତିକ ଗାତ୍ରେ
ସଚେତ କଲେକ ପ୍ରିୟସଖୀ ସଭିଏଁ । ୨୦ ।

୧୮-୨—ସ୍ୱୟମ୍ବର ଏଥେ (କ) ।
୧୯-୪—ସବୁର ହିତ (କ) । ୨୦-୪—କଟେ (କ) ୨୦-୬—ସଭିଠେଁ (ଖ) ।

୧୯ । ସମ୍ଭୂତ—ଜାତ । ଦମଘୋଷ ରାଜାସୁତ—ଶିଶୁପାଳ । ହିତ—ହିତ କରିବା ଲୋକ ।
୨୦ । ହକାରଇ—ଡ଼ାକଇ । ବାସ—ଲୁଗା ।

# ପଞ୍ଚମ ଛାନ୍ଦ

---

ରାଗ—ବରାଡ଼ି—ଆଷାଢ଼ଶୁକ୍ଳ ବାଣୀ

ଏଥୁ ଅନ୍ତରେ ରାଜା ଜେମାଦେଈ । ଅତି ଦୁଃଖରେ ସଖି ଆଗେ କହଇ ।
ପ୍ରାଣର ପ୍ରିୟ ମୋ ବିମଳା ସଖି । ତୋର ବଦନ ଥାଇକି ନା ଦେଖି
ମୁଁ ମରିବି ସତ । ଶିଶୁପାଳ ମୋର ଧରିବ ହସ୍ତ । ୧ ।

ପିତା ଥାଇ ମୋର କଲ୍ପିକ ବର । ଏଥକୁ ଆଉ ନାହିଁ ନା ଉତ୍ତର ।
ନିଶ୍ଚୟେ ମୋର ମରଣ ହୋଇଲା । ଶିଶୁପାଳକୁ ସେ ବର ବରିଲା ।
ମୋ କୃଷ୍ଣରେ ମନ । କେ ଅବା ତାହା କରିବ ଘଟଣ । ୨ ।

ଦୁଷ୍ଟ ପାମର ଅଟେ ମୋର ଭାଇ । କୃଷ୍ଣ ସଙ୍ଗରେ ବଇର ବହଇ ।
ଶିଶୁପାଳକୁ କଲା ମୋତେ ବର । ନିଶ୍ଚୟେ ମରିବି ତାର ଉପର ।
ତାର ଶତ୍ରୁ ମୁହିଁ । ମୋର ମରଣ ଯେ ଅଛି ବହଇ । ୩ ।

ସ୍ୱୟମ୍ବର ଦିନେ ଅଇଲେ ହରି । ଦେଖିଲିଟିକି ତା ନୟନ ଭରି ।
ସ୍ତ୍ରିରୀଙ୍କ ମନ ଚଞ୍ଚଳ ସ୍ୱଭାବ । ଦେଖି ଉଡ଼ିଲା ମୋ ଧଇର୍ଯ୍ୟ ଭାବ ।
ଲୋଚନେ'ଛି ଲାଗି । ବିଧାତା କଲା ମତେ ମନଭାଗୀ । ୪ ।

କୃଷ୍ଣ ଯାହାକୁ ବରପଣେ ଆସି । କଉଁ ବିହି ତାହା ଭାଙ୍ଗିଲା ବସି
ଏବେ କିମ୍ପାଇ ଦୁଷ୍ଟ ଭାଇ ମୋର । ବାହୁଡ଼ ନ କଲ୍ପିକ ସ୍ୱୟମ୍ବର ।
ଆସନ୍ତେ ମୁରାରି । ରାଜାଙ୍କ ମଧ୍ୟୁ ଘେନିଯାନ୍ତେ ହରି । ୫ ।

୧-୩—ଗୋ ବିମଳା (ଖ) । ୧-୬—ଶିଶୁପାଳର ମୁଁ ଧରିବ ହସ୍ତ (ଖ) । ୨-୧—ମୋତେ କରିକ (କ) । ୩-୨—କୃଷ୍ଣ ସଙ୍ଗତେ (କ) । ୪-୨—ଚାଲ୍ଲି ମୁଁ (କ) । ୫-୨—ବିଧାତା ତା (ଖ) । ୫-୧—ସେ ପାପିଷ୍ଠ (କ) । ୫-୩—ଶିଶୁପାଳର ମୁଁ (କ) ।

ଏହା ଜାଣି ପାପୀ ଦୁଷ୍ଟ ରୁକ୍ମଣ । ଶିଶୁପାଳକୁ ସେ କଲା ବରଣ ।
ଛାର ଶିଶୁପାଳ ହସ୍ତ ଧରିବି । ନିଶ୍ଚୟେ ଅଗ୍ନିକୁ ଡେଇଁ ମରିବି ।
ଦେଖିବ ସଭିଏଁ । ଜୀଇ ନ ଥିବି ହରି ବେଳ ଯାଏ । ୬ ।

ସତ୍ୟ କରି କହୁଛି ତୁମ୍ଭ ଆଗେ । କୃଷ୍ଣ ବିନୁ ମନ ଆନେ ନ ଲାଗେ ।
ଯହୁଁ ଯେଣି ତାଙ୍କୁ ଦେଖିଲି ମୁହିଁ । ପ୍ରାଣ ବଲ୍ଲଭ କରି ବରିଲଇଁ ।
ଏକଥା ନିଶ୍ଚିତ । ଚନ୍ଦ୍ର ସୂର୍ଯ୍ୟ ଯେବେ ଅଛନ୍ତି ସତ । ୭ ।

ବିକଚ ପଦ୍ମ ନୟନ ଶ୍ରୀମୁଖ । ମନେ ପଡ଼ିଲେ ଯାଇ ସବୁ ଦୁଃଖ ।
ଅଙ୍ଗ ଶୋଭାବନ ଜ ଜଳଧର । ପୀତ ବସନ ଶଙ୍ଖ ଚକ୍ର କର ।
ଗଳେ ବନମାଳ । ଦେଖିଲଟି କି ହୃଦୟ ବିଶାଳ । ୮ ।

କର୍ଣ୍ଣେ କୁଣ୍ଡଳ ଜଗଜନ ମୋହେ । ଶ୍ରୀବତ୍ସ ଚିହ୍ନ କଉସ୍ତୁଭ ଶୋହେ ।
ଶିରେ ମୁକୁଟ ଅତି ବିଚକ୍ଷଣ । ବାହେ ବାହୁଟି ମୁଦ୍ରିକା କଙ୍କଣ ।
ଗରୁଡ଼ ପିଠିରେ । ବିଜେ କରିଥିଲେ ରାଜାଙ୍କ ଠାରେ । ୯ ।

ମେଡ଼ରେ ଥାଇ ଦେଖାଇଲୁ ସହି । ତାହା ସୁମର ପ୍ରାଣ ଅଛି ରହି ।
ହେଲ କର୍ମ କଲା ପିଅର ମୋର । କୃଷ୍ଣଙ୍କୁ ଛାଡ଼ି ଶିଶୁପାଳ ବର ।
କୃଷ୍ଣ ତହିଁ ମନ । ଯେତେବେଳ ଯାଏ ଥିବ ଜୀବନ । ୧୦ ।

୭-୧—କରୁଅଛି ତୁମ୍ଭରି (ଗ) । ୭-୨—ଆନ ନ ଲାଗେ (ଖ) । ୭-୪—ବର ବରିଲଇଁ (ଙ) । ୮-୪—ଚକ୍ରଧର (ଗ) । ୮-୫—ଲମ୍ବେ (ଘ) । ୧୦-୧—ଦେଖିଲଇଁ (ଙ) । ୧୦-୪—ତାହାକୁ ଛାଡ଼ି (ଙ) ।

---

୮ । ବିକଚ—ଫୁଟିଲା । ଜଳଧର—ମେଘ । ପୀତବସନ—ହଳଦିଆ ଲୁଗା । କର—ହାତ । ବିଶାଳ—ପ୍ରଶସ୍ତ ।

୯ । ଜଗଜନ—ସମସ୍ତ ଜଗତର ଲୋକ । କଉସ୍ତୁଭ—କୃଷ୍ଣଙ୍କ ଛାତିରେ ଥିବା ମଣି । ଶିରେ—ମୁଣ୍ଡରେ । ବାହୁଟି—ବାହୁ । ମୁଦ୍ରିକା—ମୁଦି । କଙ୍କଣ—ହାତ ବଳା ।

ଯେବେ ମୋହୋର ତୁ ପ୍ରାଣ ସଙ୍ଘାତ । ଉପାୟ କର ଆଣ ଯଦୁନାଥ ।
ମୁହିଁ ଗ୍ରହିଁବି କି ଶିଶୁପାଳର । ଏ କଥା ସ୍ଥିର କରି ମନେ ଧର ।
କହୁ ଅଛି ସତ । ମୋର ମରଣ ଦମଘୋଷ-ସୁତ । ୧୧ ।

ବାଲ କାଳେ ଥିଲି ପିତା ସଭାର । ଦିନେ ପ୍ରବେଶ ହୋଏ ଏକ ଚାର ।
କୃଷ୍ଣର ଗୁଣ ମହିମା କହିଲା । ସେହି ଦିନୁ ମୋର ମନ ରହିଲା ।
ନାନା ବ୍ରତ କରି । ବର ମାଗଇ ମୁଁ ପାଇବି ହରି । ୧୨ ।

ଏ କଥା ଯେବେ ମୋ ଅଟଇ ସତ । କୃଷ୍ଣ ହୋଇବେ ମୋର ପ୍ରାଣନାଥ ।
ଏହାଉଁ ଯେବେ ହୋଇବାକ ଆନ । ନିଶ୍ଚୟ ମୋର ହରିଇବ ପ୍ରାଣ ।
ପୁଣି ରଜମାଦେଇ । ପଡ଼ିଲେ ମହୀଭାଗେ ମୋହ ହୋଇ । ୧୩ ।

ମୋହ ଛଡ଼ାଇ ବସାଇଲେ ସଖୀ । କୋମଳ କରି କହେ ଚନ୍ଦ୍ରମୁଖୀ ।
ରୋଦନ ଆଉ ନ କର ଗୋ ମାୟେ । କରିବା କୃଷ୍ଣ ଆସିବା ଉପାୟେ ।
ସେ ଦୀନ-ବାନ୍ଧବ । ବାରତା ପାଇ ଆସିବ ମାଧବ । ୧୪ ।

ଏବେ ଗୋ ସୁନ୍ଦରି ଏମନ୍ତ କର । ଦ୍ୱାରକା ଯାଉ ଏକ ଦ୍ୱିଜବର ।
ଗୁପତେ ଲେଖ ଲେଖି ଦେବା ହାଥ । ପଢି ଆସିବେ ଯଦୁକୁଳ ନାଥ ।
ସେ ଦୟା-ସାଗର । ଶରଣ ପକ୍ଷପାତ ଚକ୍ରଧର । ୧୫ ।

ସଖୀ ବଚନ ଶୁଣିଣ ରୁକ୍ମଣୀ । ମନେ ବିଚାର କରି କହେ ପୁଣି ।
କହିଲୁ ଯାହା ନୁହଇ ବିଚାର । ମହିମା ଯାର ନ ଜାଣେ ଶଙ୍କର ।
ତାହାଙ୍କ କେମନ୍ତେ । ଲେଖ ଲେଖିଦେବା ଦୂତର ହାଥେ । ୧୬ ।

୧୧-୪—କହୁଛି ସ୍ୱପାଠ (କ) । ୧୨-୨—ଫଳ ମାଗଇ (କ) ।
୧୩-୩—ଏକଥାରୁ ଯେବେ ହୋଇବ (କ); ୧୩-୬—ଭୂମିଭାଗେ (ଖ); ମୋହ-ଯାଇ (କ) । ୧୬-୨—କରି ବୋଲେ (ଖ) । ୧୬-୬—ଲେଖି ଦେବ (ଖ) ।

୧୩ ମହୀଭାଗେ—ପୃଥିବୀରେ । ୧୬ । ଶଙ୍କର—ଶିବ ।

ନାରଦ ସନକାଦି ସିଦ୍ଧ ଯତି । ଯୁଗେ ଯୁଗେଣ ଲପ୍ତି କରୁଛନ୍ତି ।
ଅଷ୍ଟାଙ୍ଗ ଯୋଗ ସମାଧି ଧାରଣେ । ମହିମା ଲେଶ ମାତ୍ରହିଁ ନ ଜାଣେ ।
ତୁ କହୁ ସାହାସ । ଦୂତ ଯାଇଁ ତହିଁ କରିବ କସ । ୧୭ ।

ଅନନ୍ତ କୋଟି ବ୍ରହ୍ମାଣ୍ଡ ଠାକୁର । ବ୍ରହ୍ମା ଈଶ୍ୱର ଯାର ପରିଗ୍ରହ ।
ବ୍ରହ୍ମାଣ୍ଡ ଯାର ଖେଳଘର ଦେଖ । ତହିଁକି କେମନ୍ତ ଲେଖିବା ଲେଖ ।
ଏମନ୍ତ ଅଜ୍ଞାନ । ଚନ୍ଦ୍ରମା ହାଥେ ଧରିବାକୁ ମନ । ୧୮ ।

ରୁକ୍ମଣୀ ବାଣୀ ବିମଳା ଶୁଣିଣ । କହଁ ଗୋ ମନଭଙ୍ଗ କରୁ ପୁଣ ।
କୃଷ୍ଣ ମହିମା ଗୋ ଶୁଣ ସଙ୍ଗାତ । ଆରତଠାରେ ହୋନ୍ତି ପକ୍ଷପାତ ।
କୁମ୍ଭୀରକୁ ମାରି । ଗଜରାଜକୁ ସେ ଦେଲେ ଉଦ୍ଧାରି । ୧୯ ।

ନାମ ଯାହାର ଦୁଖ-ବିନାଶନ । ଆରତଜନ ଆରତ-ଭଞ୍ଜନ ।
ଦୟାସାଗର ଦୁଖିଜନ ବନ୍ଧୁ । ଭଗତଜନ ପ୍ରିୟ ସୁଖସିନ୍ଧୁ ।
ସେ ଭାବକୁ ବଶ । ଭାବକୁ ନିକଟ ହୋନ୍ତି ପ୍ରକାଶ । ୨୦ ।

ବିଲମ୍ବ ନ କର ରାଜକୁମାରି । ଲେଖ ପତ୍ରିକା ଗୁଣ ଅନୁସରି ।
କରେ ଧରିଣ ସେ ଲେଖନ ପଦ । ପ୍ରଥମେ ଲେଖେ କୋଟି ଦଣ୍ଡବତ ।
ଲେଖିଲେକ ପୁଣ । ଶରଣ ପଶିଲି ତୁମ୍ଭ ଚରଣ । ୨୧ ।

ଯେଉଁ ଦିନୁ ତୁମ୍ଭ ଶୁଣିଲି ଗୁଣ । ମନରୁ ଦୁଖଗଲା ତତକ୍ଷଣ ।
ଯେଉଁ ପ୍ରାଣୀଙ୍କର ଅଛି ଲୋଚନ । ତହିଁର ଲାଭ ତୁମ୍ଭ ଦରଶନ ।
ଲଜ୍ଜା ଛାଡ଼ିଲଇ । ମନ ବଳିଲା ମୋର ତୁମ୍ଭ ତହିଁ । ୨୨ ।

୧୭-୨—ଧ୍ୟାନ (ଗ) । ୨୧-୪—ପ୍ରଥମେ କଲେ (ଖ) । ୨୧-୫—ଲହିଲକ (ଗ) ।
୨୨-୬—ମୋ ତୁମ୍ଭରି (ଖ) ।

୧୭ । ଲପ୍ତି—ଧ୍ୟାନ ।

ମହତ ଲୋକ ଦୟାଶୀଳ ଗୁଣ । ତୁମ୍ଭ ସମାନ କାହିଁ ଅଛି ପୁଣ ।
ନିଶ୍ଚୟେ ତୁମ୍ଭଙ୍କୁ ବରିଲି ବର । ଯେ ଯିସ ବୋଲୁ ବିଚାର ନ କର ।
ଆତ୍ମ ସମର୍ପଣ । ନିଶ୍ଚୟ କଲି ମୁଁ ତୁମ୍ଭ ଚରଣ । ୧୩ ।

ତୁମ୍ଭର ପାଇଁ ଏ ଦେହ ମୋହୋର । ଧରିଅଛି, ତୁମ୍ଭେ ବିବେକବର ।
ଶିଶୁପାଳ ମୋତେ ଛୁଇଁବ ନାହିଁ । ବୀର ଭାଗର ମୁଁ ଅଟେ ଗୋସାଇଁ ।
ଜାଣି କଣ୍ଠୀରବ । ଭାଗ କେମନ୍ତେ ଶୃଗାଳ ଖାଇବ । ୧୪ ।

ଦେବତା ପୂଜା ବ୍ରତ ଉପବାସ । ଯେବେ ମୁଁ କରିଥିବି ପୀତବାସ ।
ଯାବତ ଯଜ୍ଞ ବ୍ରତ କରିଥିବି । ତେବେ ମୁଁ ତବ ଶ୍ରୀହସ୍ତ ଧରିବି ।
ହୁଅ ପରସନ । ଦୂତ ବରଗିଲି ଦୋଷ ନ ଘେନ । ୧୫ ।

ଯେଉଁ ଚରଣ-ରେଣୁ ପଶୁପତି । ବାଞ୍ଛା କରଣ ନ ପାଇ ଅଛନ୍ତି ।
ପଦ୍ମଲୋଚନ ତହିଁ କଲି ଆଶ । ଯେବେଣ ତୁମ୍ଭେ କରିବ ନିରାଶ ।
ବ୍ରତ କରୁଥିବି । ଶଏ ଜନ୍ମରେ ତୁମ୍ଭଙ୍କୁ ପାଇବି । ୧୬ ।

ହେ ଦେବ ଆଉ ବିଚାର ନ କର । ଆମ୍ଭ ଘରେ ଅଛି କୁଳ ବେଭାର ।
ବିଭା ସମୟେ ଗ୍ରାମ ଦେବତାଇ । ପୂଜା କରିବାକୁ କନିଆ ଯାଇ ।
ସେହିଠାବେ ଥିବ । ରଥେ ବସାଇ ମୋତେ ଘେନିଯିବ । ୧୭ ।

୧୩-୧—ମହତ କୁଳଶୀଳ ରୂପ (କ) । ୧୪-୨—ବୀରଙ୍କ ବୀର (କ) । ୧୪-୪—ବିଳ-ଭଗ ମୁଁ ଅଟଇ (ଗ) । ୧୪-୫—ତୁମ୍ଭେ (ଗ) । ୧୫-୩—ପୁଣ ଯୁଗାନ୍ତେ ଯଜ୍ଞ (କ) । ୧୬-୩—ପଦ୍ମ ଚରଣରେ କଲି ମୁଁ ଆଶ (କ) ।

---

୧୩ । ଶୀଳ—ସ୍ୱଭାବ । ଯେ ଯିସ—ଯେ ଯାହା ।

୧୪ । ବୀରଭାଗର—ବୀର ଅଂଶ ଅର୍ଥାତ୍ ମୁଁ ବୀରଙ୍କ ଯୋଗ୍ୟ । କଣ୍ଠୀରବ—ସିଂହ । ଶୃଗାଳ—ବିଲୁଆ ।

୧୫ । ତବ—ତୁମ୍ଭର । ବରଗିଲି—ପଠାଇଲି ।

୧୬ । ପଶୁପତି—ମହାଦେବ ।

ଶିଶୁପାଳ ଜାଲ ମୁହିଁ ହରଣୀ । ଯେଡ଼ ଦେବାଙ୍କ ପ୍ରଭୁ ଚକ୍ରପାଣି ।
ମଧରେ ଅଉ ଦନେ ଅଛୁ ବନ୍ଧା । ଏଥକୁ ଅଉ ଅନ ନାହିଁ ସାଧା ।
କ ଲେଖିବ ସ୍ୱାମି । ତୁମ୍ଭେ କ ନ ଜାଣ ଅନ୍ତରଯାମି । ୨୮ ।

ଲେଖ ଲହିଲା କସ୍ତୂରୀ ପଙ୍କେଣ । ମୁଦ୍ରଣ ଦେଲା ବ୍ରାହ୍ମଣ ହସ୍ତେଣ ।
ସୁବର୍ଣ୍ଣ ଘଟେ ପୂରେଇଲା ନୀର । ଚଲ ବ୍ରାହ୍ମଣ କାର୍ଯ୍ୟ ସିଦ୍ଧ କର ।
ପଥେ ବିଘ୍ନମାନ । ସକଳ ଖଣ୍ଡିବେ ମଧୁସୂଦନ । ୨୯ ।

ନଗରୁ ବିପ୍ର ସେ ବାହାର ହୋଇ । ଖଣ୍ଡି ଏ ଦୂର ଯାଇ ବିଚାରଇ ।
ସିଦ୍ଧ ହୋଇବ ମୋ ସକଳ କାର୍ଯ୍ୟ । ଲୋଚନେ ଦେଖିବଇଁ ଦେବରାଜ ।
ରୁକ୍ମିଣୀ ପ୍ରସାଦେ । ହରିଙ୍କି ଭେଟିବଇଁ ଅପ୍ରମାଦେ । ୩୦ ।

ଯେଉଁ ଚରଣ ବ୍ରହ୍ମ ମୁନିଗଣ । ଚିନ୍ତା କରଣ ଛନ୍ତି ଅନୁକ୍ଷଣ ।
ସେହୁ ଚରଣ ମୁଁ ଦେଖିବ ଯାଇଁ । କେଉଁ ତପସ୍ୟା କରି ଅଛି ମୁହିଁ ।
ଧନ୍ୟ ପିତା ମାତ । ଧନ୍ୟ କ୍ଷଣେ ମୁହିଁ ହୋଇଲି ଜାତ । ୩୧ ।

ଯାହାର ବକ୍ଷଦେଶେ ଥାଇ ଲକ୍ଷ୍ମୀ । ପାଦ ରଜକୁ ଧ୍ୟାନେ କରଛନ୍ତି ।
ଅଜହିଁ ଲକ୍ଷ୍ମୀ ପାଇ ନାହିଁ ଯାହା । କେଉଁ ଭାଗ୍ୟେ ମୁହିଁ ଦେଖିବ ତାହା ।
ସେ ଆନନ୍ଦ ହୋଇ । ପନ୍ଥେ ଚଲଇ ହରିଗୁଣ ଗାଇ । ୩୨ ।

୨୮-୨—ଯେଡ଼ଣ ଦେବ (ଖ) । ୨୮-୩—ଦିନେକ ଅଛଇ ବଧ (ଖ) ।
୨୮-୪—ଅନ ମୋତେ (ଙ) । ୨୮-୫—କ କରବ (ଖ) ।
୨୯-୪—ଯାଥ (ଖ) । ୨୯-୫—ପନ୍ଥ (ଖ) ।
୩୧-୬—କଉଁ ଲଗ୍ନରେ କଲେ ମୋତେ ଜାତ (କ) । ୩୨-୧—ତାହାଙ୍କ ବକ୍ଷସ୍ଥଳେ (ଖ) । ୩୨-୨—ଚିନ୍ତା (ଖ) ।

---

୨୯ । ନୀର—ପାଣି । ୩୦ । ଅନୁକ୍ଷଣ—ସର୍ବଦା । ୩୨ । ବକ୍ଷଦେଶେ—ହୃଦୟରେ ।

ଦ୍ୱିଜବର ଯାଇଁ ଦ୍ୱାରକା ପାଇ । ବିଷ୍ଣୁର ମନ୍ଦିରେ ମିଳିଲା ଯାଇଁ ।
ବିପ୍ରଙ୍କୁ ଦେଖି ପ୍ରଭୁ ଭଗବାନ । ରତ୍ନ ପଲଙ୍କୁ ଉଠିଲେ ବହନ ।
ବସାଇଲେ ନେଇ । ରତ୍ନ ଝରିରେ ବିପ୍ର ପାଦ ଧୋଇ । ୩୩ ।

ବ୍ରାହ୍ମଣ ଲେଖ ଦେଲା ନେଇ ହାଥ । ଫେଡ଼ି ପଢିଲେ ଯଦୁକୁଳନାଥ ।
ପଢ଼ି ବ୍ରାହ୍ମଣ ମୁଖକୁ ଚାହିଁଲେ । ଅଉ କିସ କଥା ଅଛି ବୋଇଲେ ।
କହିଲ ବ୍ରାହ୍ମଣ । ଏଥକୁ ଯିସ ଯାହା ତୁମ୍ଭେ ଜାଣ । ୩୪ ।

ବୋଲନ୍ତି ପ୍ରଭୁ ଦେବ ଦାମୋଦର । ରୁକ୍ମିଣୀ ମନ ଥାଇ ଆମ୍ଭଠାର ।
ଅମ୍ଭର ଚିତ୍ତ ଥାଇ ତାହା ଠହିଁ । ନଦ୍ରାହିଁ କେମନ୍ତ ଜାଣିଲା ନାହିଁ ।
ଆଣିବ ରୁକ୍ମିଣୀ । ସେହି ଯେ ଅମ୍ଭର ପ୍ରାଣମିତଣୀ । ୩୫ ।

ଏତେକ କହି ଭୂଜ ହୋଇ ହରି । ଷଡ଼ରସେ ବିପ୍ର ଭୋଜନ କରି ।
ରତ୍ନ ପଲଙ୍କେ ଶୁଆଇଲେ ନେଇ । ହେନ ପ୍ରକାରେ ରାତ୍ରି ଗଲା ପାହି ।
ଉଦବେଗ ମନ । ଧାନ କାର୍ତ୍ତିକ ଭଜେ ଭଗବାନ । ୩୬ ।

୩୪-୨—ତତ୍ତ୍ୱ ଜଗନ୍ନାଥ (ଖ) । ୩୫-୨—ଚିର (ଢ) । ୩୫-୩—ଧ୍ୟାନ (ଢ) ।
୩୬-୩—ଶୋ[illegible]ଲକ୍ଷ ଯାଇ(ଖ) ।

୩୬ । ରାଗ—ଦୁଃଖୀ ।

# ଷଷ୍ଠ ଛାନ୍ଦ

ରାଗ—ଗୁଜ୍ଜରୀ

ଶୁଣ ସାଧୁଜନେ ଷଷ୍ଠଛନ୍ଦ ଏ ଗୀତ
ଏଥୁ ଅନନ୍ତରେ ହୋଇଲା ଯେ ପ୍ରଭାତ । ୧ ।

ପୂର୍ବଦିଗ ଦିଶିଲାକ ଲୋହିତ ବର୍ଣ୍ଣ ।
ମଳିନ ଦିଶିଲା ତାରା ପଟଳ, ଜାଣ । ୨ ।

ତରୁବର-କୋଟରେ ରହିଲା ଉଲୂକ ।
ଚକ୍ରବାକୀ ସଙ୍ଗେ ଆସି ମିଳିଲା କୋକ । ୩ ।

ଫୁଟିଲା କମଳ ବନ ପ୍ରସରେ ଗନ୍ଧ ।
ଭ୍ରମର କୁମୁଦ କୋଷେ ରହିଲା ବନ୍ଧ । ୪ ।

ହାରାବଳୀ ଦେହରେ ଶୀତଳ ଲାଗିଲା ।
ପ୍ରଦୀପ ମାନଙ୍କ ଉଗ୍ର ତେଜ ଭାଙ୍ଗିଲା । ୫ ।

ସଙ୍କେତ ଶବ୍ଦ ବାଣୀ (କ): ୨-୨ତାରା ପଟଳ ମାନ (ଗ) । ୩-୧—କଦରେ (ଖ) ।

---

୧ । ଲୋହିତ—ନାଲି । ତାରା ପଟଳ—ତାରା ମଣ୍ଡ଼ଳୀ ।

୩ । ତରୁବର କୋଟରେ—ବଡ଼ଗଛ କୋରଡରେ । ଉଲୂକ—ପେଚା । ଚକ୍ରବାକୀ—ଚକୋରୀ । କୋକ—ଚକ୍ରୁଆ, ଚକ୍ରବାକ ।

୪ । କମଳ ବନ—ପଦ୍ମବନ । ଗନ୍ଧ—ଫୁଲ ବାସ । କୁମୁଦ କୋଷେ—କଇଁ ଫୁଲ ଭିତରେ । ଭ୍ରମର···ବନ୍ଧ—ରାତିରେ କଇଁଫୁଲ ଫୁଟିଲା ଅବସ୍ଥାରେ ଥିଲାବେଳେ ଭଅଁର ତା ଭିତରେ ପଶି ମଧୁ ପାନ କରୁଥିଲା । ସକାଳ ହେଲାକ୍ଷଣି ସେ ଫୁଲ ବୁଜି ହୋଇ ଆସିଲା । ତେଣୁ ଭଅଁର ତା'ଭିତରେ ବନ୍ଦ ହୋଇ ରହିଲା ।

୫ । ହାରାବଳୀ—ସ୍ତ୍ରୀମାନଙ୍କ ଗଳାରେ ଥିବା ହାରମାନ । ଉଗ୍ର—ପ୍ରଖର ।

ବଧୂ ଜନେ ଅଙ୍ଗେ ଲାଜ ଭୂଷଣ କଲେ ।
ଅଭିସାରୀମାନେ ନିଜ ପୁରକୁ ଗଲେ । ୬ ।

ପବନ ବହଇ ମନ୍ଦ ଗନ୍ଧ ଶୀତଳ ।
ପ୍ରତିଧ୍ୱନି କରନ୍ତି ଭ୍ରସଲ କୋକିଳ । ୭ ।

ମୟୂର କପୋତ କରେ ମଧୁର ନାଦ ।
ଘନ ଘନ ରଡ଼ନ୍ତି ସେ ଚରଣାୟୁଧ । ୮ ।

ଶଯ୍ୟା ତେଜି ପଲଙ୍କରେ ବିଜୟେ ହରି ।
ବ୍ରହ୍ମଚିନ୍ତା ଆପଣାର ସ୍ୱରୂପେ କରି । ୯ ।

ସ୍ନାନ ସାରି ବିପ୍ର ହୋମ-ମନ୍ଦିରେ ପଶି ।
ହୋମ ଦେଇ ମନ୍ତ୍ରଭାଗ ପଢ଼ନ୍ତି ବସି । ୧୦ ।

ପ୍ରଭାତ ସମୟେ ନିତ୍ୟ କର୍ମନ୍ତ ସାରି ।
ଦାରୁକଙ୍କୁ ଚାହିଁ ଆଜ୍ଞା ଦେଲେ ଶ୍ରୀହରି । ୧୧ ।

୭-୨—ଭ୍ରମର (ଖ)।
୯-୧—ଦକ୍ଷିଣ ହରି (ଖ)। ୯-୨—ସ୍ୱରୂପେ (କ)। ୧୦-୧—ବିପ୍ର ଗଣ (କ)।
୧୧-୧—ପ୍ରାତ ସମୟରେ ନିତ୍ୟ ଅନ୍ତର ସାରି (ଗ)।

---

୬। ଅଭିସାରୀ—ଯେଉଁ ସ୍ତ୍ରୀ ପ୍ରିୟ ସହିତରେ ମିଳିତ ହେବାକୁ ସଂକେତ ସ୍ଥାନକୁ ରାତ୍ରରେ ଯାଏ।

୭। ମନ୍ଦ ଗନ୍ଧ ଶୀତଳ—ଧୀର, ଫୁଲବାସ ଭରା ଓ ଥଣ୍ଡା। ଭ୍ରସଲ—ଭ୍ରମର।

୮। କପୋତ—କାପ୍ତା। ରଡ଼ନ୍ତି—ଡାକନ୍ତି ବା ଶବ୍ଦ କରନ୍ତି। ଚରଣାୟୁଧ—କୁକୁଡ଼ା।

୯। ବ୍ରହ୍ମଚିନ୍ତା—ଈଶ୍ୱରଙ୍କ ଧ୍ୟାନ। ସ୍ୱରୂପେ—ନିଜରୂପରେ। ଲୋକେ ସକାଳୁ ଉଠି ଭଗବାନଙ୍କୁ ଧ୍ୟାନ କରନ୍ତି। ଏଠାରେ କୃଷ୍ଣଚନ୍ଦ୍ର ସକାଳୁ ଉଠି ନିଜ ରୂପକୁ ଚିନ୍ତା କଲେ, କାରଣ ସେ ନିଜେ ତ୍ରିଭୁବନର କର୍ତ୍ତା—ଜଗତର ପ୍ରଭୁ, ତେଣୁ ଭଗବାନ।

୧୦। ହୋମ-ମନ୍ଦିର—ଯାଗ କରିବା ଘର। ହୋମ ଦେଇ—ନିଅଁରେ ଘିଅ ଆହୁତି ଦେଇ।

୧୧। ନିତ୍ୟକର୍ମନ୍ତ—ପ୍ରତିଦିନ କରୁଥିବା କର୍ମମାନଙ୍କୁ। ଦାରୁକ—କୃଷ୍ଣଙ୍କ ସାରଥି।

ଆଜ୍ଞା ପାଇ ନନ୍ଦୀଘୋଷ ଆଣିଲା ସାଜି ।
ଯୋଚିଲାକ ତହିଁ ନେଇ ଅପୂର୍ବ ବାଜୀ । ୧୨ ।

ଶୋଭା ପାଉଅଛି କି ଗରୁଡ଼-କେତନ ।
ଥୋଇଲା ଶାରଙ୍ଗ ଗଦା ସାୟକ ମାନ । ୧୩ ।

ନନ୍ଦୀଘୋଷ ରଥେ ହରି ବିଜୟ କଲେ ।
ବିଦର୍ଭ ଦେଶକୁ ରଥ ବାହା ବୋଇଲେ । ୧୪ ।

ବ୍ରାହ୍ମଣଙ୍କୁ ବସାଇ ରଥର ଉପର ।
ଚଳାଲାକ ରଥବର ପବନୁ ଖର । ୧୫ ।

ଏସନ ଦେଖିଣ ରାମ ମନେ ବିଚାରି ।
ନନ୍ଦୀଘୋଷ ଚଢି ଏକା ଗଲେ ତ ହରି । ୧୬ ।

ରୁକ୍ମିଣୀର ପାଇଁ ବିଜେ କଲେ ଗୋବିନ୍ଦ ।
ରାଜାମାନଙ୍କର ସଙ୍ଗେ ହୋଇବ ଦ୍ୱନ୍ଦ । ୧୭ ।

ଏତେ ବୋଲି ବିଜେ କଲେ ତାଳଧ୍ୱଜେଣ ।
ଚଳିଲେକ ସଙ୍ଗେ ରଥୀ ପାଦାନ୍ତି ଗଣ । ୧୮ ।

ଚରଣ ରେଣୁରେ ରବି ମଣ୍ଡଳ ଛନ୍ନ ।
ବାଟରେ ଭେଟିଲେ ଯାଇଁ ମଧୁସୂଦନ । ୧୯ ।

---

୧୨ । ନନ୍ଦୀଘୋଷ—କୃଷ୍ଣଙ୍କ ରଥ । ବାଜୀ—ଘୋଡ଼ା ।

୧୩ । ଗରୁଡ଼ କେତନ—ଗରୁଡ଼ ଚିହ୍ନଥିବା ରଥର ପତାକା । ଶାରଙ୍ଗ—କୃଷ୍ଣଙ୍କ ଧନୁ, ସାୟକ—ଶର । ୧୪ । ବାହା—ଚଳାଅ । ୧୫ । ରଥବର—ରଥ ।

୧୬ । ରାମ—କୃଷ୍ଣଙ୍କ ବଡ଼ଭାଇ ବଳରାମ । ୧୮ । ତାଳଧ୍ୱଜେଣ—ତାଳଧ୍ୱଜ ରଥରେ । ବଳରାମଙ୍କ ରଥର ନାମ ତାଳଧ୍ୱଜ । ରଥୀ—ରଥରେ ଚଢି ଯୁଦ୍ଧ କରି ପାରିବା ସୈନ୍ୟ । ପାଦାନ୍ତି—ଭୂଇଁରେ ଚାଲି ଲଢେଇ କରିପାରିବା ସୈନ୍ୟ ।

୧୯ । ଚରଣରେଣୁରେ—ଅନେକ ସୈନ୍ୟ ଯିବାରୁ ସେମାନଙ୍କ ଗୋଡ଼ରେ ଉଡୁଥିବ ଧୂଳିରେ ।

ବୋଲନ୍ତି ସେ ରାମ କୃଷ୍ଣ ମୁଖକୁ ଚାହିଁ ।
ଏକା ହୋଇ ଅଇଲ ଆମ୍ଭଙ୍କୁ ନ କହି । ୨୦ ।

ଜରାସନ୍ଧ ରାଜା ଅଟ ଅଛନ୍ତି ମଲ୍ଲ ।
ଏଥକୁ ଆସିବା ଏକା ନୋହଇ ଭଲ । ୨୧ ।

ବଳଭଦ୍ରଙ୍କର ହେନ ବଚନ ଶୁଣି ।
ହସିଣ ବୋଲନ୍ତି ପ୍ରଭୁ ଶାରଙ୍ଗପାଣି । ୨୨ ।

ତୁମ୍ଭର ପ୍ରସାଦେ ଆମ୍ଭ ଭୟେଁଛୁ କାହିଁ ।
ବିଶେଷେ ଅଇଲ ତୁମ୍ଭେ ସୁବଳ ହୋଇ । ୨୩ ।

ଯେତେ ଦୁଷ୍ଟରାଜା ଛନ୍ତି ମର୍ତ୍ତ୍ୟ ଲୋକରେ ।
ସମସ୍ତେ ହୋଇବେ ହତ ଆମ୍ଭ ହାଥରେ । ୨୪ ।

ଯେତେ ରୁଣ୍ଡ ହୋଇଛନ୍ତି ନୃପତି ଗଣ
ତୁଳାରାଶି, ଅଗ୍ନି ଆମ୍ଭ ସାୟକ ଜାଣ । ୨୫ ।

୨୦-୧—ଲମ୍ବ ବଦନ (ଙ) ।
୨୨-୧—ନାରାନ୍ତ (ଖ) । ୨୩-୨—ଆପଣ ଅଇଲେ (ଙ) ଚଳାଇ (କ) ।
୨୪-୧—ମର୍ତ୍ତ୍ୟ ଲୋକରେ (ଖ) । ୨୪-୨—ଆମ୍ଭ ବାଣରେ (ଖ) ।
୨୫-୨—ନିନ୍ଦିତ ମାନଙ୍କେ (ଖ) ।

---

ରବିମଣ୍ଡଳ—ସୂର୍ଯ୍ୟ ମଣ୍ଡଳ । ଛନ୍ନ—ଘୋଷେଇ ହୋଇ ପଡ଼ିବା । ମଧୁସୂଦନ— ମଧୁ ନାମକ ଅସୁରକୁ ମାରିଥିବା କୃଷ୍ଣ ।

୨୧ । ଜରାସନ୍ଧ—ବୃହଦ୍ରଥ ରାଜାଙ୍କ ପୁଅ । ଏ ଜଣେ ପ୍ରଧାନ ବୀର । ବୃହଦ୍ରଥଙ୍କ ମୃତ୍ୟୁ ପରେ ସେ ମଗଧ ଓ ଚେଦିର ରଜା ହୋଇଥିଲେ । ମଲ୍ଲ—ମାଲ ବା ବୀର ।

୨୨ । ହେନ—ଏପରି । ଶାରଙ୍ଗପାଣି—ଶାରଙ୍ଗ ଧନୁଧାରୀ ଶ୍ରୀକୃଷ୍ଣ ।

୨୩ । ସୁବଳ ହୋଇ—ବହୁ ସୈନ୍ୟ ସାମନ୍ତ ସଙ୍ଗରେ ନେଇ, ଉତ୍ତମ ବଳ ଯୁକ୍ତ ହୋଇ । ୨୫ । ସାୟକ—ବାଣ ବା ଶର ।

ଏ ଛାର ପତଙ୍ଗ ରାଜା କରିବେ କିସ ।
ନିମିଷ ଅର୍ଦ୍ଧକେ ଯିବେ ସଭଯେ ନାଶ । ୨୬ ।

ଏସନ କହୁଣ ପଥେ ଚଳାଇ ଥାଟ ।
ହୋଇଲେ ଭୀଷ୍ମକ ରାଜା ରାଜ୍ୟ ନିକଟ । ୨୭ ।

ଦେଖିଲେକ ଦିବାକର ଅସ୍ତକୁ ଯାଏ ।
ଶ୍ରମ ପାଇ ରୁହାଇଲେ ବଳ ସେଠାଯେ । ୨୮ ।

ପ୍ରବେଶ ହୋଇଲା ଆସି ପ୍ରଦୋଷ କାଳ ।
ଶଶିକଳା ଦିଶିଲା ଗଗନ ମଣ୍ଡଳ । ୨୯ ।

ଦିଗ-ସୀମନ୍ତିନୀ ହାସ୍ୟ ଦଶନ ଦିଶେ ।
କାମ ତରୁବର ନବ ଅଙ୍କୁର କି ସେ । ୩୦ ।

ଚକୋର ଚଞ୍ଚୁ-କପାଟ ଫେଡ଼ାଣ କୁଞ୍ଚି ।
ଚକ୍ରବାକୀ ନିକୃନ୍ତନ କୁନ୍ତ ଉଇଁଛି । ୩୧ ।

୨୭-୧—କହନ୍ତେ (କ) । ୨୮-୧—ରବି ବିମ୍ବ (ଖ) ।
୨୯-୨—ଶଙ୍ଖପଣ୍ଡ (ଖ) । ୩୧-୨—କୁନ୍ତିବି କି (କ) ।

---

୨୮ । ଦିବାକର—ସୂର୍ଯ୍ୟ । ବଳ—ଧୈର୍ଯ୍ୟ ।

୨୯ । ପ୍ରଦୋଷ କାଳ—ସନ୍ଧ୍ୟା ବେଳ । ଶଶିକଳା—ଚନ୍ଦ୍ର ଅଳୁଅ ।

୩୦ । ଦିଗ ସୀମନ୍ତିନୀ—ଦିଗ ରୂପକ ସ୍ତ୍ରୀ । ଦଶନ—ଦାନ୍ତ ।
କାମତରୁବର—କନ୍ଦର୍ପ ହେଲା ବଡ଼ ଗଛ । ଅଙ୍କୁର—ଗଜା ।

୩୧ । ଚକୋର ଚଞ୍ଚୁ କପାଟ—ଚକୋର ପକ୍ଷୀମାନଙ୍କ ଥଣ୍ଟ ହେଲା କବାଟ । ସେହି କବାଟକୁ ଫେଡ଼ିଦେବା ବିଷୟରେ ଚନ୍ଦ୍ର ଅଳୁଅ କୁଞ୍ଚି ପରି ଅଟେ । ଚକୋର ଚନ୍ଦ୍ର କିରଣ ପାନ କରିବାର ପ୍ରସିଦ୍ଧି ଅଛି । ନିକୃନ୍ତନ—କଟାଇବା । କୁନ୍ତ—ଏକ ପ୍ରକାର ଶସ୍ତ୍ର ।

ମାନବତୀ ମାନ-ଗଜରାଜ ଅଙ୍କୁଶ ।
ତାରାଗଣ-ପଦ୍ମବନ ବିନୋଦ ହଂସ । ୩୨ ।

ସଂଯୋଗିନୀ ରସରେଖା ରସିକ ପ୍ରାଣ ।
ବିଯୋଗିନୀ ହୃଦୟକୁ କତୁରି ବାଣ । ୩୩ ।

କଇରବ କଣ୍ଠଭୂଷା ମୁକୁତାହାର ।
କମଳିନୀ ଆନନ୍ଦ ବିଖଣ୍ଡ କୁଠାର । ୩୪ ।

ଦିନମଣି କରତାପ ଶମକୁ ଗଲା ।
ତରୁଲତା ପଲ୍ଲବ ସରସ ପାଇଲା । ୩୫ ।

---

୩୨ । ମାନବତୀ···ଅଙ୍କୁଶ—ମାନିନୀ ସ୍ତ୍ରୀମାନଙ୍କର ଅଭିମାନ ହେଲା ହାତୀ, ତାକୁ ଶାସନ କରିବା ପାଇଁ ଜହ୍ନ ଆଲୁଅ ହାତୀ ଅଙ୍କୁଶ ପରି ଅଟେ । ତାରାଗଣ···ହଂସ—ଆକାଶର ତାରା ଯାକ ହେଲେ ପଦ୍ମବନ । ଚନ୍ଦ୍ର ସେ ବନରେ ଖେଳୁଥିବା ହଂସ ପରି ଅର୍ଥାତ୍ ହଂସ ଯେପରି ପଦ୍ମବନରେ ଖେଳା କରେ, ଆକାଶରେ ଚନ୍ଦ୍ର ସେହିପରି ତାରା ମାନଙ୍କ ଭିତରେ ଖେଳୁଛନ୍ତି ।

୩୩ । ସଂଯୋଗିନୀ ରସରେଖା—ପତିମାନଙ୍କ ସହିତ ମିଳିତ ହୋଇ ରହିଥିବା ସ୍ତ୍ରୀମାନଙ୍କ ପକ୍ଷରେ ଜହ୍ନ ଆଲୁଅ ପ୍ରେମ ବା ପ୍ରୀତିର ଧାର ପରି । ରସିକ ପ୍ରାଣ—ରସିକ ବା ପ୍ରେମିକ ଲୋକମାନଙ୍କର ପ୍ରାଣ ସ୍ୱରୂପ । ବିଯୋଗିନୀ...କତୁରି ବାଣ—ପତିଠାରୁ ଦୂରରେ ରହିଥିବା ବିରହିଣୀ ସ୍ତ୍ରୀମାନଙ୍କ ହୃଦୟକୁ କାଟି ପକାଇବା ପାଇଁ ଜହ୍ନ ଆଲୁଅ କତୁରି ପରି ଅଟେ । ଅର୍ଥାତ୍ ଚନ୍ଦ୍ର କିରଣ ଦେଖି ବିରହିଣୀ ମାନଙ୍କ ମନରେ ପ୍ରେମ ବା ପତିସହ ମିଳିତ ହେବାର ବାସନା ଜାଗେ । ପତିଠାରୁ ଦୂରରେ ଥିବା ହେତୁ ସେ ବାସନାକୁ ପୂରଣ କରି ନ ପାରି ସେମାନେ ମନେ ମନେ ଦହି ହେଉଥାନ୍ତି ।

୩୪ । କଇରବ···ମୁକୁତାହାର—ମୁକ୍ତାହାର ଯେପରି କଣ୍ଠ ମଣ୍ଡନ କରେ, ଜହ୍ନଆଲୁଅ ସେହିପରି କଇଁ ଫୁଲର କଣ୍ଠ ମଣ୍ଡନ କରେ ଅର୍ଥାତ୍ ଜହ୍ନ ଆଲୁଅ ପଡ଼ିଲେ କଇଁ ଫୁଲ ଫୁଟେ । କମଳିନୀ···କୁଠାର—ପଦ୍ମଫୁଲର ଆନନ୍ଦକୁ ଖଣ୍ଡନ କରିବା ବିଷୟରେ ଜହ୍ନ ଆଲୁଅ କୁରାଢ଼ି ପରି ଅଟେ ଅର୍ଥାତ୍ ପଦ୍ମ ଜହ୍ନ ଆଲୁଅରେ ଫୁଟି ନ ପାରି ବୁଜି ହୋଇଯାଏ । ତେଣୁ ତାର ଆନନ୍ଦ ରହେ ନାହିଁ ।

୩୫ । ଦିନମଣି କର ତାପ—ସୂର୍ଯ୍ୟ କିରଣର ପ୍ରଖରତା ବା ଖରାର ତେଜ । ଶମକୁ ଗଲା—ଶାନ୍ତ ପାଇଲା ବା ଶାନ୍ତ ହୋଇଗଲା (ସନ୍ଧ୍ୟା ହେବାରୁ) । ପଲ୍ଲବ—ପତର ।

ସନ୍ଧ୍ୟା ସାର ବସିଲେକ କେଶବ ରାମ ।
ଦେଖୁ ଦେଖୁ ଗଲା ନଗି ପ୍ରଥମ ଯାମ । ୩୬ ।

ଗୋବିନ୍ଦେ ବୋଲନ୍ତି ବଳଭଦ୍ରଙ୍କୁ ଚାହିଁ ।
ଏହିଠାରେ ରହ ତୁମ୍ଭେ ସବଳ ହୋଇ । ୩୭ ।

ଅମ୍ଭେ ଏକା ହୋଇ ରଥ ଚଢିଣ ଯିବୁ ।
ଭୀଷ୍ମକ କଟକେ ଏହି ସନ୍ଦେଶ ଥିବୁ । ୩୮ ।

ସେ ଯିସ ବୋଲିବ ତାହା ଥିବନ୍ତି ଜାଣି ।
ପ୍ରାତକାଳେ ବିଭା ତ ହୋଇବେ ରୁକ୍ମଣୀ । ୩୯ ।

ବିଭାଠାରୁ ନିଶ ଶେଷ ଆସିବୁ ଅମ୍ଭେ ।
ଏମନ୍ତ ସମୟେ ଯାଇ ହୋଇବ ତୁମ୍ଭେ । ୪୦ ।

ଏତେ କହି ରଥ ନେଇ ପବନୁ ଖର ।
ପ୍ରବେଶ ହୋଇଲେ ସେ କଟକ ଭିତର । ୪୧ ।

ଗୋବିନ୍ଦ ବୋଇଲେ ତୁମ୍ଭେ ବ୍ରାହ୍ମଣ ଯାଅ ।
ରୁକ୍ମଣୀ ଆଗରେ ଅମ୍ଭେ ଅଇଲୁ କହ । ୪୨ ।

ଭୀଷ୍ମକ ଆଗରେ ଯାଇ ଶୃର ଜଣାଇ ।
କର ଯୋଡ଼ି ବୋଇଲା ଶୁଣିମା ଗୋସାଇଁ । ୪୩ ।

୩୬-୧—ବସିଲେ ସେ ଗୋବିନ୍ଦ (ଖ) । ୩୭-୨—ଏମନ୍ତରେ (କ । ୩୭-୨—ସମେତ (କ) ।

୩୮-୨—ବିନେ ରହିବୁ (ଖ) । ୩୯-୨—ରାଜ ପାହିଲେଣ ବିଭା ହେବ (ଗ) ।

୩୬ । ପ୍ରଥମ ଯାମ—ପହିଲ ପହର । ୩୮ । କଟକେ—ରାଜଧାନୀରେ । ୩୯ । ଯିସ—ଯାହା ।

ଜଗନ୍ନାଥ ପ୍ରଭୁ ବନେ କର ଅଇଲେ ।
କଟକ ଭିତରେ ଭୋଗ ଅସେ ରହିଲେ । ୪୪ ।

ସଙ୍ଗେ କେହି ନାହିଁ ଏକା ରଥକେ ବସି ।
କାହାକୁହିଁ ଭୟ ନାହିଁ ନଗ୍ରେଣ ପଶି । ୪୫ ।

ଗୃର ମୁଖୁଁ ଶୁଣିଣ ସେ ନୃପତିବର ।
ପଶିଲାକ ଯାଇ ଅନ୍ତପୁର ଭିତର । ୪୬ ।

ରାଣୀ ଯେନ ବସିଣ କରଇ ବିଚାର ।
ଗୋବନ୍ଦେ ଅଇଲେ ବୋଲି କହିଲା ଗୃର । ୪୭ ।

ନିଶ୍ଚୟେ ସେ ରୁକ୍ମଣୀ କ ନେବେ ଭୁ ଜାଣ ।
ଗୃହୁଁଥିବେ ଯେତେ ଛନ୍ତି ନୃପତି ଗଣ । ୪୮ ।

ପ୍ରତକ୍ଷେ ଅଛନ୍ତି ସେ ଗୋ କମଲାବର ।
କମଳଣୀ ଅଛନ୍ତି ରୁକ୍ମଣୀ ଆମ୍ଭର । ୪୯ ।

ପୁତ୍ର ମୋ ରୁକ୍ମଣ ଦୁଷ୍ଟ ସଙ୍ଗତ ପାଇ ।
ତାହାଙ୍କ ସଙ୍ଗତେ ଗୋ ବଇର ହୋଇ । ୫୦ ।

ଜଗ୍ନସନ୍ଧ ଯେନ ବଡ ନିଶ୍ଚୟ କର ।
ନାହିଁ ବୋଲି ନ ପାରିଲି ପୁତ୍ରକୁ ଡର । ୫୧ ।

ଅଇଲେ ଗୋବନ୍ଦ ଯେନ ଯିବେ ରୁକ୍ମିଣୀ ।
ନିଶ୍ଚୟ କରଣ ଏହା ଥିବଟି ଜାଣି । ୫୨ ।

୪୪-୨—ଭୁଞ୍ଜ (ଗ) ।
୪୭-୨—କହଇ (ଗ) । ୪୯-୨—ତୋହର (ଢ) ।

୪୯ । କମଳାବର—ଲକ୍ଷ୍ମୀଙ୍କ ସ୍ୱାମୀ ଭଗବାନ । ୫୦ । ବଇର—ଶତ୍ରୁତା ।

ସ୍ୱୟମ୍ବର ହବନେ ଅଇଲେ ବନମାଳୀ ।
ନିମିଷ ମାତ୍ରକେ ସବୁ ନୃପଙ୍କ ଦଳ । ୫୩ ।

ଏବେ ରାଜାମାନେ ଯିବେ ଦଣ୍ଡ ପାଇଣ ।
ଜୀବନ ସଂଶୟ ହାଦେ ହେବ ରୁକ୍ମଣ । ୫୪ ।

ଶୁଣି ରାଣୀମାନେ ଶୋକ ହରଷ ହୋଇ ।
ବାହୁଡ଼ିଲେ ରାଜା ହେବ ବୃତ୍ତାନ୍ତ କହି । ୫୫ ।

ଆଜ୍ଞା ପାଇ ଗଲା ବିପ୍ର ରୁକ୍ମିଣୀ ପୁର ।
ସଖୀଗଣ ଘେନିଣ ସେ କରେ ବିଚାର । ୫୬ ।

ନିମିଷକ ଯୁଗ କରି ବଞ୍ଚଇ ବାଳୀ ।
ନିଶ୍ଚୟେ ନଇଲେ ପ୍ରଭୁ ଶ୍ରୀବନମାଳୀ । ୫୭ ।

ତାହାଙ୍କର ଭେଟ କାହିଁ ପାଇବ ହିତ ।
ନିଶ୍ଚୟେ ହୋଇଣ ମୁହିଁ ହୋଇଲି ହତ । ୫୮ ।

ବ୍ରାହ୍ମଣ କପାଇଁ ମୋର ଅଇଲା ନାହିଁ ।
ନିଶ୍ଚୟେ ବଚନ ଅବା ପାଇଲା କାହିଁ । ୫୯ ।

ଦେଖୁଁ ଦେଖୁଁ ନିଶି ତିନି ପ୍ରହର ଗଲା ।
ଗୋବିନ୍ଦ ଆସିବା ଏନ୍ତୁ ଆଶା ସରିଲା । ୬୦ ।

ରଜନୀ ପ୍ରଭାତେ ଶିଶୁପାଳ ବରଣ ।
ନ ଗ୍ରହିଁ ମରିବ ମୋର ଏହି ସେ ମାନ । ୬୧ ।

୫୩-୨—କ୍ଷଣକ ମାତ୍ରକେ (ଖ) । ୫୫-୧—ଶୁଣି କହି ରାଣୀ ମନେ (କ) ୫୫-୨—ନୃପ (ଖ) । ୫୮-୨ – ମୁଁ ଘ (ଖ) । ୬୧-୨—ଏ କଥା ମନ (କ) ।

୫୪ । ହାଦେ—ହଠାତ୍ । ୬୦ । ନିଶି—ରାତ୍ରି ।

ତୁମ୍ଭେମାନେ ନ ଜାଣ ମୋ ହୃଦୟ ବ୍ୟଥା ।
ଜୀବନ୍ ମରଣ ସୁଖ ଏହୁ ସେ କଥା । ୬୨ ।

ଅଣ୍ଠାସନା କଚ କହେ ବିମଳା ସଖୀ ।
ନଷ୍ଟପ୍ରେ ଅଇଲେ କୃଷ୍ଣ ଏମନ୍ତ ଦେଖି । ୬୩ ।

ଘନ ଘନ ବାମ ବାହୁ ଫୁରୁଛି ମୋର ।
ନଷ୍ଟପ୍ରେ ଅଇଲେ ତୋର ପ୍ରାଣ ଈଶ୍ୱର । ୬୪ ।

କୃଷ୍ଣଙ୍କୁ ମନରେ ବାଳୀ କରେ ଧିଆନ ।
ଏମନ୍ତେ ଫୁରଲା ତାର ବାମ ନୟନ । ୬୫ ।

ବିଶ୍ୱର କରଇ ଏ ତ ଶୁଭ ଶକୁନ ।
ଏସନ ସମୟେ ଦଶିଲାକ ବ୍ରାହ୍ମଣ । ୬୬ ।

ସନ୍ନିଧେ ମିଳଲା ବିପ୍ର ହରଷ ମୁଖ ।
ଦେଖି ରୁକ୍ମିଣୀର ଗଲା ସକଳ ଦୁଖ । ୬୭ ।

ଚନ୍ଦ୍ର କି ଉଇଁଲା କଇରବ କାନନ ।
ପ୍ରଭାତ ସମୟେ ଯେସନେ କମଳବନ । ୬୮ ।

ଜନ୍ମ ଅନ୍ଧ ପାଇଲା କି ଲୋଚନ ଦୁଇ ।
ମୃତୁ ପିଣ୍ଡ ଯେସନକେ ଜୀବନ ପାଇ । ୬୯ ।

୬୨-୧—ନ ଜାଣ କି ମୋହର ବ୍ୟଥା (ଖ) । ୬୨-୨—ନଷ୍ଟପ୍ରେ ଜାଣିବା ସୁଖ ନୋହୁ ଏ କଥା (କ) । ୬୩-୨—ଏହୁ ସେ (ଖ) । ୬୪-୧—ବାମ ବାହୁ କମ୍ପନ ତ (ଖ) । ୬୬-୨—ଏମନ୍ତ (ଖ) । ୬୭-୧—ଆନନ୍ଦ ମୁଖ (କ) ।

---

୬୩ । ଅଣ୍ଠାସନା କଚ—ବୋଧ ଶୋଧ କରି । ୬୪ । ଘନଘନ—ଥରକୁ ଥର, ବାରବାର ୬୫ । ବାମ ନୟନ—ବିଁଆ ଆଖି । ୬୬ । ଶକୁନ—ଚିହ୍ନ । ୬୮ । କଇରବ-କାନନ—କଇଁ ଫୁଲର ବଣ । କମଳ ବନ—ପଦ୍ମବନ । ୬୯ । ଲୋଚନ—ଆଖି ।

ବ୍ରାହ୍ମଣଙ୍କୁ ଗୃହିଁଣ ନମସ୍କାର କରି ।
କହିଲା ବିପ୍ର ବଚନ ଅଇଲେ ହରି । ୭୦ ।

ଶ୍ରବଣେ ପୂରିଲା ସୁଧା, ହିଅ ଶୀତଳ ।
ପୋଡ଼ିଲା ବନରେ ଯେହ୍ନେ ବରଷେ ଜଳ । ୭୧ ।

ଶୁଣିଣ ହରଷ ହୋଇ ସଖୀ ସମୂହ ।
ପୁଣ ପଚାରନ୍ତି କାହିଁ ହୋଇଲେ କହ । ୭୨ ।

ବ୍ରାହ୍ମଣ କହଇ ଯେତେ ଯେତେ ବୃତ୍ତାନ୍ତ ।
ବଳରାମ ଅଇଲେକ ହୋଇ ଯେମନ୍ତ । ୭୩ ।

ଏକା ହୋଇ ହରି ଏକା ରଥେ ଅଇଲେ ।
ଆମ୍ଭର ନଗ୍ର ଭିତରେ ଆସି ରହିଲେ । ୭୪ ।

ମୋତେ ବୋଇଲେକ ତୁମ୍ଭେ ଯାଅ ବହନ ।
ଦୁଖ କରୁଥିବ ଆମ୍ଭ ରୁକ୍ମିଣୀ ମନ । ୭୫ ।

ଶୁଣି ମନେ ଆନନ୍ଦ ହୋଇଲେ ରୁକ୍ମିଣୀ ।
କେ ତାହା ବଚନେ କହି ପାରିବ ପୁଣି । ୭୬ ।

କଣ୍ଠମଣି ମାଳା ନାନା ରତନ ଦେଲେ ।
ଦେଇ ମନେ କେବେହେଁ ସନ୍ତୋଷ ନୋହିଲେ । ୭୭ ।

୭୪-୨—ନଗ୍ରରେ ପରବେଶ ହୋଇଲେ (କ) । ୭୫-୨—ମୋର ସଖୀର ମନ (ଖ) ।

---

୭୧ । ଶ୍ରବଣେ—କାନରେ । ହିଅ—ହୃଦୟ । ସୁଧା—ଅମୃତ ।
୭୩ । ବୃତ୍ତାନ୍ତ—ବାରତା, ଖବର ।

କସ ଦେଇ ତୋଷିବାଇ ଭୋ ଦ୍ୱିଜବର ।
ଦଣ୍ଡପ୍ରଣାମ କରନ୍ତି ବିପ୍ର ପାଦର । ୭୮ ।

ଅନେକ ପ୍ରକାର ଦ୍ୱିଜବରଙ୍କୁ ତୋଷି ।
ପାହାନ୍ତା ରଜନୀ ଦିନମଣି ପ୍ରକାଶି । ୭୯ ।

ଯିବ ପାହାନ୍ତାଣି କଥା ହୋଇବ ଯାହା ।
ଶୁଣ ହେ ସୁଜନ ଜନ କହଇ ତାହା । ୮୦ ।

ଶ୍ରୀଜଗନ୍ନାଥଙ୍କ ଶିରୀ ଚରଣ ଦୁଇ ।
ଗାଇଲା ଦୀନ କାର୍ତ୍ତିକ ଆନନ୍ଦ ହୋଇ । ୮୧ ।

୭୮-୨—ରୁକ୍ମିଣୀ ପଢ଼ନ୍ତେ ଯାଉ (ଗ) ।

---

୭୯ । ରଜନୀ—ରାତି । ଦିନମଣି—ସୂର୍ଯ୍ୟ ।

# ସପ୍ତମ ଛାନ୍ଦ

ରାଗ—ବରାଡ଼ି—କଳସା ବାଣୀ

ଏଥୁ ଅନନ୍ତରେ ସପତମ ଛନ୍ଦ ଗୀତ
ବଭ୍ରୁଘରେ ଆନନ୍ଦ ଉତ୍ସବ ନୃତ୍ୟ ଗୀତ
ଅନେକ ନୃପତି ରୁଣ୍ଡ, ବାଦ୍ୟମାନ ବାଜେ
ରଥୀ ହାଥୀ ରାଉତ ମାହୁନ୍ତ ବଳ ସାଜେ । ୧ ।

ରତ୍ନ-କଞ୍ଚୁକିତ ପାଟର ଯେ ଶାଢ଼ୀ ଘର
ନାମ ଗିରି ଟେରା ଟେକ କଲେକ ଉହାଡ଼
ଚନ୍ଦ୍ରାତପ ଚଉପାଶେ ଚାମର ମଣ୍ଡିଲେ
ଅନେକ ଆହ୍ଲାଦ ସମ୍ମୁଣ୍ଡିଆ କରାଇଲେ । ୨ ।

ସୁବର୍ଣ୍ଣେ ଗଢ଼ିଲେ ବେଦୀ ଫଟିକ ପାବଚ୍ଛ
ଚାରିକୋଣେ ନେଇଣ ଥୋଇଲେ ଦଧି ମାଛ
ସୁବର୍ଣ୍ଣ କୁମ୍ଭ ଉପରେ ଚୂତ ପତ୍ର ଡ଼ାଳ
ତଥି ଉପରେ ଥୋଇଲେ ନେଇ ନାଠୀକାଳ । ୩ ।

୨-୧—କଞ୍ଚୁକିତ ପାଗାଟର (କ) । ୨-୨—ଗିରିମାନ ଟେକ କଲେ ଉହାଡ଼ର (କ) ।
୨-୪—କୋଶେକ ମାତଣ ସମ୍ମୁଣ୍ଡିଆ ସଜ କଲେ (କ) । ୩-୨—ଥୋଇଣ ଅଛନ୍ତି (ଗ) ।

---

୨ । ରତ୍ନ-କଞ୍ଚୁକିତ—ରତ୍ନରେ ମଣ୍ଡିତ । ଗିରିଟେରା—ପାହାଡ଼ ପରି ଉଚ୍ଚ ଟେରା ।

୨ । ଚନ୍ଦ୍ରାତପ—ଚାନ୍ଦୁଆ । ଚାମର—ଚଅଁର ।

୩ । ପାବଚ୍ଛ—ପାହାଚ । ଚୂତପତ୍ର ଡ଼ାଳ—ଅମ୍ବପତ୍ରର ଓ ଡ଼ାଳ । ନଡ଼ୀକାଳ—ନଡ଼ିଆ ।

ରତ୍ନ ସିଂହାସନ ଛଥି ଠାବେଣ ଠାବେଣ
ବସିଲେକ ଅନେକ ଆସିଣ ନୃପଗଣ
ଶିଶୁପାଲ ବରବେଶ ହୋଇ କର ଅଶେ
ଶଏ ଜୋଡ଼ା ବୀରଢୋଲ ବାଜୁଅଛି ପାଶେ । ୪ ।

ଦୁଇପାଶେ ଅଛଇ ସହସ୍ରେ ପାଠଛନ୍ଦ
ବରପଣେ ଆସୁଅଛି ଦମଘୋଷ-ସୁତ
ଜରାସନ୍ଧ ବୋଇଲା ରୁକ୍ମଣ ମୁଖ ଚାହିଁ
ଧେନି ଆସ ବରଙ୍କୁ ପାଛୋଟି ବେଗ ହୋଇ । ୫ ।

ଗଲେକ ରୁକ୍ମଣ ସଙ୍ଗେ ଘେନି ନାନା ବଳ
ବାହୁଡ଼ି ବର ଘେନିଣ ଆଇଲା ଶିଶୁପାଳ
ବସିଲେକ ଶିଶୁପାଲ ସଭାର ମଧ୍ୟେଣ
ଦେଖିଣ ହରଷ ହୋଇଲେ ଦୁଷ୍ଟ ରାଜାଗଣ । ୬ ।

ଜରାସନ୍ଧ ଜଣାଇ ଶୁଣିମା ମହୀପାଳ
ଆସିଣ ହୋଇଲା ବଡ଼ ବରଣର ବେଳ
ବେଦୀର ଉପରେ ଯାଇ ବେଗେ କରୁ ବର
ହୋଇବ ଗନ୍ଧାଧିବାସ ବିଳମ୍ବ ନ କର । ୭ ।

୪-୧—ରତ୍ନ (ଖ) । ୪-୨—ଯାଇଣ ଅନେକ ରାଜାଗଣ (ଖ) । ୪-୪—ଶଏ ଜୋଡ଼ା (ଖ)
୫-୧—ଅଢ଼େ ଉଡ଼ଇ···ବାଉଛନ୍ତି ।
୫-୪—ବେଗ ଯାଇ (ଖ) । ୭-୨—ହୋଇଲା କେବଳ ଆସି (ଖ) ।

---

୪ । ବୀରଢୋଲ—ଏକ ପ୍ରକାର ବାଦ୍ୟ ବାଜା । ୫ । ଦମଘୋଷ-ସୁତ—ଶିଶୁପାଳ ।
୭ । ମହୀପାଳ—ରାଜା । ଗନ୍ଧାଧିବାସ—ବିବାହ ବେଳେ କରାଯାଉଥିବା କର୍ମ ବିଶେଷ ।

ଜରାସନ୍ଧ କହଇ ଭୀଷ୍ମକ ନୃପବର
ହୋଇଲାକ ବେଳ ହେ ବରଣ କର ଯାଇଁ
ବେଦୀର ଉପରେ ଯାଇଁ ବସିଲାକ ବର
ଯାଅ ପୁରୋହିତ ତୁମ୍ଭେ ଗନ୍ଧବାସ କର । ୮ ।

ହଳଦି-ଚନ୍ଦନ ଦେଇ ଗନ୍ଧବାସ କଲେ
ଅପରଳା ପୂଜା ଶିର ମୁକୁଟ ବାନ୍ଧିଲେ
କନ୍ୟା ଆସୁ ଆସୁ ବୋଲି ଡାକ ପଡ଼ିଗଲା
ଏସନ ସମୟେ ଆସି ଚର ଜଣାଇଲା । ୯ ।

ଶୁଣ ଦେବ ମହାରାଜ ମଗଧ-ଈଶ୍ୱର
ଏକା ରଥେ ଚଢ଼ିଣ ଆଇଲେ ଚକ୍ରଧର
ପରିବାର ସଙ୍ଗତେ ଗୋଟିଏ କେହି ନାହିଁ
ଏହିଠାରେ କଟକ ଭିତରେ ଛନ୍ତି ରହି । ୧୦ ।

ସଭାଠାରେ ଯେତେ ନରନାରୀ ମାନେ ଥିଲେ
ଗୋବିନ୍ଦ ଆଇଲେ ବୋଲି ସମସ୍ତେ ଧାଇଁଲେ
ଦେଖିଲେକ ରଥେ ବିଜେ କରିଛନ୍ତି ହରି
ଚାହାନ୍ତି ଯୁବତୀ ଆଖି ନିରିମିଳ କରି । ୧୧ ।

କେ ବୋଲଇ ଭୀଷ୍ମକ ତ ଅଟଇ ଅସାର
ଏହାଙ୍କୁ ଛାଡ଼ିଣ କଲେ ଶିଶୁପାଳ ବର

୯-୪—ଏମନ୍ତ (କ) । ୧୧-୧—ନାରୀଗଣ (ଖ) । ୧୧-୪—ନିମିଷ ନ କରି (କ)

---

୮ । ଗନ୍ଧବାସ—ବିବାହାଙ୍ଗ କର୍ମ ବିଶେଷ । ୧୦ । ମଗଧ-ଈଶ୍ୱର—ଜରାସନ୍ଧ ।
ଚକ୍ରଧର—ଚକ୍ର ନାମକ ଅସ୍ତ୍ରଧାରୀ କୃଷ୍ଣ । ପରିବାର—ଶ୍ରୀକର । ଏକା—ଏକୁଟିଆ ।

ଆମ୍ଭମାନଙ୍କର ଦେଖି ଜୀବନ ଉଡ଼ିଲା
ପିଅର ହୋଇଣ ହେଳ କରମ ତ ଭଲା । ୧୨ ।

କେ ବୋଲଇ ସଖି ଗୋ ଦେଖିଲୁ କି ବର
ବରଣ ହୋଇ ବସିଛନ୍ତି ବେଦୀର ଉପର
ଏହାଙ୍କ ଚରଣ-ଘଷା ପଥରକୁ ସର
ନୋହଇ ସେ ଗୋଠା ବର ଆଣିଛନ୍ତି ବର । ୧୩ ।

ରୁକ୍ମିଣୀ ବରଣମାଳା ତାର କଣ୍ଠେ ଦେଇ
କଲେ ତାକୁ ବଡ଼ମ୍ଣ ବାହୁ କାହିଁପାଇଁ
ଚାହିଁବାକୁ କେବେହେଁ ଗୋ ନ ରୁଚଇ ଆଖି
କପି ଗଲେ ଯେସନେ ଚମ୍ପକ ମାଳା ଦେଖି । ୧୪ ।

ଜନମନ୍ତୁଁ ଅନ୍ଧ କି ଅଟଇ ତାର ଭାଇ
ସ୍ୱୟମ୍ବର ଦିନ କି ଏହାଙ୍କୁ ଦେଖି ନାହିଁ
ରୁକ୍ମିଣୀ ଜନନୀ କମ୍ପା ସୀତ୍କାର କଲା
ଝିଅକୁ ଦେନଣ କମ୍ପା ଜଳେ ନ ପଡ଼ିଲା । ୧୫ ।

ଦେଖୁ ଅଛନ୍ତି କି ସଖି କମଳଲୋଚନ
ନୀଳମେଘ ପ୍ରାୟେକ ଶ୍ରୀଅଙ୍ଗ ଶୋଭାବନ
ଭ୍ରୂଲତା ସୁନ୍ଦର କାମଦେବ ଧନୁ ଜିଣି
କସ୍ୱଟ କୁଣ୍ଡଳ ଶଙ୍ଖ ଚକ୍ର ଗଦାପାଣି । ୧୬ ।

୧୨-୪—ନଡ଼ ହେଳ କର୍ମ କଲ (ଖ) ।
୧୩-୨—ହୋଇଣ ଅଛ (କ) । ୧୩-୪—ଗୋଠା ଘାକୁ (ଭ) ।
୧୬-୨—ଶଙ୍ଖର (କ) ।

୧୪ । କପଗଲେ—ମାଙ୍କଡ଼ ବେକରେ । ୧୬ । କସ୍ୱଟ—ମୁକୁଟ । ଶଙ୍ଖଚକ୍ର ଗଦାପାଣି
—ହାତରେ ଯାହାଙ୍କର ଶଙ୍ଖ, ଚକ୍ର ଓ ଗଦା ଅଛି ।

ମୁଁ ଯାହା ବୋଲିବି ସଖି ତୁମ୍ଭେ ଅସ୍ତୁ କର
ବିଧାତା କରିବ ରୁକ୍ମିଣୀକି ଏହୁ ବର
ଜନ୍ମ ମୁଖ, ଶିଶୁପାଳ ଲାଜ ପାଇ ଯାଉ
ଆମ୍ଭମାନଙ୍କର ମନୋରଥ ସିଦ୍ଧ ହେଉ । ୧୭ ।

ଏମନ୍ତ କହୁଣ ତହୁଁ ଶୁଭିଲାକ ଗୋଳ
ଧାଇଁଣ ଅଛନ୍ତି ଲୋକେ କରିଣ ତହଳ
କେ ବୋଲନ୍ତି କେଣେ ଗଲା, କେ ବୋଲନ୍ତି କାହିଁ
ବାରତା କହନ୍ତି ଏକ ଅବରେକକୁ ଯାଇଁ । ୧୮ ।

ଗୋବିନ୍ଦେ ଅଇଲେ ବୋଲି ଶୁଣିଲେକ ତହିଁ
ବଳବୀର୍ଯ୍ୟମାନ ଗଲା ଗର୍ଭସ୍ରାବ ହୋଇ
କଣ୍ଠୀରବ ଧ୍ୱନି ଶୁଣି ଯେସନେ ହରିଣୀ
ତେସନେକ ପରାଜ୍ୟେ ହୋଇଲେ ନୃପମଣି । ୧୯ ।

କ୍ଷତ୍ରିଗଣ ଅବୋଧଣ ଜରାସନ୍ଧ କହେ
ତୁମ୍ଭେମାନେ ଭୟ କପାଁ ପାଉଛ ସଭିଁଏ
ବରଣ ନ ଥାଇ ଯେବେ ଅଇଲେ ଗୋପାଳ ।
ଏ କଥାକୁ ତୁମ୍ଭେମାନେ କାହିଁ ପାଇଁ ଭାଳ । ୨୦ ।

୧୭-୪—ଶୋହେ ଶଙ୍ଖ ଚକ୍ର ପାଣି (କ) ।
୧୮ ୨—ହୋଚଣ ତହଳ (ଖ) । ୨୦-୧—କ୍ଷତ୍ରିଗଣ (ଖ) ।

---

୧୯ । ବଳବୀର୍ଯ୍ୟ···ହୋଇ—ସ୍ତ୍ରୀମାନଙ୍କ ଗର୍ଭପାତ ହେଲେ ପେଟରେ ଥିବା ଭ୍ରୂଣ ବା ମାଂସ ପିଣ୍ଡୁଳା ଯେପରି ନଷ୍ଟ ହୋଇ ଖସି ପଡ଼େ, ସେହିପରି କୃଷ୍ଣଙ୍କ ଅଇବା ଖବର ଶୁଣି ଯୋଦ୍ଧାମାନଙ୍କର ବଳବୀର୍ଯ୍ୟ ଲୁପ୍ତ ହୋଇଗଲା । କଣ୍ଠୀରବ—ସିଂହ ।

ଯେ ଯାହାର ବଳମାନ ଭୂଅ ପାଶ୍ବ ଥିବା
ଅମ୍ଭେମାନେ ବସି ଥାଇଁ ବଭ୍ର କରାଇବା
ଦୁଷ୍ଟପଣ ଯେବେ ଅଚରିବ ଚକ୍ରଧର
ତେବେ ଅମ୍ଭେମାନେ କରି ପାରୁ ତ ସମର । ୨୧ ।

ରୁକ୍ମଣକୁ ବୋଇଲେ କନ୍ୟାକୁ ଯେନ ଆସ
ବରଣ ହୋଇବ ତ ବଳିଲ୍ଲ ଗନ୍ଧବାସ ।
ରୁକ୍ମ ବୋଇଲ୍ଲ କନ୍ୟା ଅର୍ଘ୍ୟସ୍ଥାନେ ଯିବ
ରଥୀ ହାଥୀ ଶତ ଶତ ତାର ସଙ୍ଗେ ଥିବ । ୨୨ ।

ଭବାନୀଙ୍କ ଦର୍ଶନ କରାଇ ବେଗେ ଆଣ
ଦାସୀଙ୍କି ରାଇଣ ଅଜ୍ଞା ଦେଲେକ ରୁକ୍ମଣ
ତତକ୍ଷଣ ନିଜ ପରିବାରୀମାନେ ଗଲେ
ରୁକ୍ମିଣୀଙ୍କ ଗନ୍ଧ ଜଳେ ସ୍ନାନ କରାଇଲେ । ୨୩ ।

ପିନ୍ଧାଇଲେ ଅପୂର୍ବ ପଉଁଶୀ ଝୀନ ବାସ
ମଲ୍ଲିକା କୁସୁମ ଭରି ସଜାଡ଼ିଲେ କେଶ
କପାଳେ ତିଳକ ଅଙ୍ଗେ ଚନ୍ଦନ ଲେପିଣ
ମୁକୁତା ସୀମନ୍ତି ହେମ ତାଟଙ୍କ ଭୂଷଣ । ୨୪ ।

୨୪-୨—ସଜ କଲେ (ଖ) ।

---

୨୧ । ବଳମାନ—ସୈନ୍ୟମାନ । ଭୂଅ—ଗୋଲକାର ଢଙ୍ଗରେ ସୈନ୍ୟମାନଙ୍କୁ ସଜାଇ ରଖିବା (ବ୍ୟୂହ ରଚନା) ।

୨୨ । ଅର୍ଘ୍ୟସ୍ଥାନେ—ପୂଜା ଦେବା ପାଗାକୁ ବା ଦର୍ଶନ ମଙ୍ଗଳବାକୁ ।

୨୩ । ଭବାନୀ—ଦୁର୍ଗା । ପରିବାରୀ—ଦାସୀ । ଗନ୍ଧଜଳେ—ସୁବାସ ପାଣିରେ ।

୨୪ । ଅପୂର୍ବ ପଉଁଶୀ ଝୀନ ବାସ—ସୁନ୍ଦର ଧଡ଼ଥିବା ସରୁ ଲୁଗା । ହେମ ତାଟଙ୍କ—ସୁନାରେ ତିଆରି କାପ ।

ସୁବେଶ କରାଇ ଦାସୀ ପହଣ୍ଡ ମଣାଇ
ହାଣ୍ଡୋଲା ଉପରେ ବଜେ କରାଇଲେ ନେଇ
ପାଟଛଣ ବସନ ଆଲମ୍ବ ଫରହର
ଦୁଇପାଶେ ସୁନାବେଣ୍ଟ ସହସ୍ରେ ଚାମର । ୧୫ ।

ମୁହୁସୁଲୀମାନେ ସଙ୍ଗେ ଅଛନ୍ତି ଗୋଡାଇ
ଧୂପ ଦୀପ ଗନ୍ଧ ପୁଷ୍ପ ନଇବେଦ୍ୟ ବହି
ଅକ୍ଷତ ତାମ୍ବୂଳ ଦୀପ ବସାଇଣ ଥାଳୀ
ଗାବନ୍ତି ମଙ୍ଗଳ ଗୀତ ଦେଇ ହୁଳହୁଳି । ୧୬ ।

ଦାଣ୍ଡ ପହିଁରାଇଣ ଚନ୍ଦନ ଛେଡ଼ା ଦେଇ
ରୁକ୍ମିଣୀ ଚଳିବା ପନ୍ଥେ ପୁଷ୍ପ ବରଷଇ
ଡାକୁଛନ୍ତି ପରିବାରୀ ମଣିମା ଗୋ ମାଏ
ଭଗବତୀ ମନ୍ଦିର ଦ୍ୱାରେଣ ଯାଇ ହୋଏ । ୧୭ ।

ଅମ୍ବିକା ପୁରକୁ ଯହୁଁ ଗଲେକ ରୁକ୍ମିଣୀ
ନନ୍ଦୀଘୋଷ ବାହୁଡ଼ିଲେ ଗୋବିନ୍ଦ ତାହା ଶୁଣି
ଶଏ ପୁର ହୋଇଣ ପଡ଼ିଛି ପଟୁଆର
ତହିଁ ଯାଇ ବିଜୟେ କଲେକ ଚକ୍ରଧର । ୧୮ ।

୧୭-୧—ପଛେ (ଖ) ୧୭-୩—ଶୁଣସି ଗୋ ମାଏ (ଖ) ।
୧୮-୪—ଶ୍ରୀକୃଷ୍ଣ ବନ୍ଧୁ ଯାଇଁ କଲେକ ଯୋହାର (ଖ) ।

---

୧୫ । ପହଣ୍ଡ ମଣାଇ—ପାଦେ ପାଦେ ଛୋଟ ଛୋଟ କରି ଚଳାଇ । ବସନ—ଧଳା ଓ ଧ୍ୱଜର । ଅଲମ୍ବ—ଛତାରେ ଓହଳିଥିବା ଝୁମ୍ପି ଓ ଝାଲରର ଥାକ ।
୧୭ । ଚନ୍ଦନ ଛେଡ଼ା—ଚନ୍ଦନ ଗୋଳା ପାଣି ଛିଞ୍ଚିବା ।
୧୮ । ଅମ୍ବିକା—ଦୁର୍ଗା । ଶଏ ପୁର—ଶଏ ବେଢ଼ । ପଟୁଆର—ଶୋଭାଯାତ୍ରା ଉତ୍ସବ ।

ହାଣ୍ଡୋଲା ଉପରୁ ଓହ୍ଲାଇଲେ ଭୈଷ୍ମୀନନ୍ଦିନୀ
ରତ୍ନମୟ କଠାଉ ଚରଣେ ଅଣି ଦେଇ
ଚରଣ ଯୋଡ଼ିଣ ତହିଁ ଅଗ୍ରେବନ ସାଥ
ପତିବ୍ରତା ବ୍ରାହ୍ମଣୀମାନଙ୍କ କର ଧରି । ୨୯ ।

ଦେଉଳ ଭିତରେ ଯାଇଁ ପଶିଲେ ରୁକ୍ମିଣୀ
ସାଷ୍ଟାଙ୍ଗେ ପାଦ୍ୟେ ପଡ଼ିଣ ସ୍ତୁତି କଲେ ସୁଶ୍ରୀ
ଜୟ ଜୟ ଦେବୀ ମା ଗୋ ଅନାଦ୍ୟ ଶକତି
ଗିରିରାଜ-ନନ୍ଦନ ଶଙ୍କର ଭଗବତୀ । ୩୦ ।

ଚଣ୍ଡମୁଣ୍ଡନାଶିନୀ ମହିଷା-ଦର୍ପହାରୀ
ପ୍ରସନ୍ନ ହୋଇବା ମୋତେ ଦେବୀ ଶାକମ୍ଭରୀ
ତୁମ୍ଭେ ଦେବୀ ଅନାଦ୍ୟ ଅଭୟା ମହାମାୟେ
ଶିଶୁପାଳ ମୁଖୁଁ ମୋତେ କର ଗୋ ଅଭୟେ । ୩୧ ।

ଏମନ୍ତ ପ୍ରକାରେଣ ଅନେକ ସ୍ତୁତି କଲେ
ଚନ୍ଦନ ଲେପିଣ ଗଳେ ପୁଷ୍ପମାଳା ଦେଲେ
ଧୂପ ଦୀପ ଗନ୍ଧପୁଷ୍ପ ନଇବେଦ୍ୟ ଦେଇ
କାମନା କଲେକ ବାଳୀ କୃଷ୍ଣ ପାଇବାଇ । ୩୨ ।

୨୯-୨—ଚରଣେ ଦାସୀ (ଖ) । ୨୯-୪—ପତିଭକ୍ତା; ହସ୍ତ ଧରି (ଗ) ।
୩୦-୨—ପ୍ରଣମ୍ୟ ହୋଇ (ଖ) ।
୩୦-୩—ଦେବ ତୁମ୍ଭେ (ଖ) । ୩୧-୧—ମହିଷା ସଂହାର (ଢ) ।

୩୦ । ସାଷ୍ଟାଙ୍ଗେ ପାଦ୍ୟେ ପଡ଼ିଣ—ଶରୀରର ଅଷ୍ଟୋତ୍ତ ଯାକ ଅଙ୍ଗ ଭୂଇଁରେ ଲଗାଇ ଶୋଇଗଲେ ପରି । ଅଷ୍ଟୋତ୍ତ ଅଙ୍ଗ ଯଥା—"ଜାନୁଭ୍ୟାଂ ଚ ତଥା ପଦ୍‌ଭ୍ୟାଂ ପାଣିଭ୍ୟାମୁରସା ଧିୟା । ଶିରସା, ବଚସା ଦୃଷ୍ଟ୍ୟା ପ୍ରଣାମୋଽଷ୍ଟାଙ୍ଗ ଉଚ୍ୟତେ ।" ଅର୍ଥାତ୍ ଜାନୁ, ପାଦ, ହାତ, ଛାତି, ବୁଦ୍ଧି, ମୁଣ୍ଡ, ବାକ୍ୟ ଓ ଦୃଷ୍ଟି ଏହି ଅଷ୍ଟୋତ୍ତ ଅଙ୍ଗ ।

ଏମନ୍ତ୍ରେଣ ପ୍ରସନ୍ନ ହୋଇଲେ ମହାମାୟେ
ପାଇବ କୃଷ୍ଣଙ୍କୁ ଏଥେ ନାହିଁ ଟୋ ସଂଶୟେ
ପୁଣି ପାଦତଳେ ପଡ଼ି ଉଠିଣ ରୁକ୍ମିଣୀ
ବାହୁଡ଼ିବା ବେଳକୁ ମଙ୍ଗଳ କଲେ ପୁଣି । ୩୩ ।

ସଖୀରେ ସଖୀରେ ବାଲୀ ପହଣ୍ଡ ମଣାଇ
କମଳ-ନୟନ ରୂପ ମନେ ଅଛୁ ଧ୍ୟାୟି
ଘନ ଘନ ଫୁରଇ ତା ବାମ ବାହୁ ଆଖି
ଦେଉଳରୁ ବାହାର ହୋଇଲେ ଚନ୍ଦ୍ରମୁଖୀ । ୩୪ ।

କୃଷ୍ଣଙ୍କୁ ନ ଦେଖି ତାର ଦେହେ ଗ୍ୟାନ ନାହିଁ
ବଦନ ଟେକିଣ ବାଲୀ ଦେଲେକ ଅନାଇ
ଦେଖିଲେକ ଅଭିନବ ମଦନ ସୁନ୍ଦର
ନୟନେ ନୟନେ ଭେଟ ପଡ଼ିଲା ତାହାର । ୩୫ ।

ଅତିବେଗେ ରଥରୁ ଓହ୍ଲାଇ ଯଦୁସାଇଁ
ରୁକ୍ମିଣୀର କର କରେ ଧଇଲେକ ଯାଇଁ
ଅଣଗନ ରତ୍ନବର ଅଛନ୍ତି ଅପାର
ନେଇ ବସାଇଲେ ନନ୍ଦୀଘୋଷର ଉପର । ୩୬ ।

ଯେସନେକେ କଣ୍ଠୀରବ ହୁଅଇ ହରଣୀ
ତେସନେକ ହରଣ ନେଲେକ ଚକ୍ରପାଣି

୬୭-୧—ତତକ୍ଷଣେ (ଖ) ।

୩୪ । କମଳନୟନ—କୃଷ୍ଣ । ୩୫ । ଅଭିନବ—ନୂଆ ।

ନାଗ ମଧ୍ୟୁ ଯେସନେ ଗରୁଡ଼ ନେଇ ବଳ
ତେସନେ କଢ଼ିଣ ଘେନି ଗଲେ ବନମାଳୀ । ୩୭ ।

ନେଲା ନେଲା, ଗଲା ଗଲା, ବାଜିଲାକ ଗୋଳ
ଧାଇଁଲେକ ରଥୀ ହାଥୀ ନୃପତି ସକଳ
ଜରାସନ୍ଧ ବଳ ଘେନି ଅଛଇ ଗୋଡ଼ାଇ
ଆଗେ ଓଗାଳଲେ ଆସି ରେବତୀର ସାଇଁ । ୩୮ ।

ରୁକ୍ମିଣୀଙ୍କ ଘେନିଣ ସେ ଗଲେ ଚକ୍ରଧର
ହାଥୀ ହାଥୀ ରଥେ ରଥେ ବାଜିଲା ସମର
ନଗରଲୋକେ ବୋଲନ୍ତି ଯେ ଯହିଁକି ଭାଜନ
ବିଧାତା କେମନ୍ତେ ଆନ କରିବ ଘଟଣ । ୩୯ ।

ବେଦୀର ଉପରେ ଆଉ ବସିଛୁ କପାଇ
ଜୁଳୁ ଜୁଳୁ ମୁଖେ ଲାଜ ବଳଛୁ ତ ନାହିଁ
ବୋଲୁଥାନ୍ତି ଅମ୍ଭେ ବଡ଼ ରାଜା ବଳୀୟାର
କୋଡ଼ୁ ଘେନି ଯାଉଛନ୍ତି କନିଆ ଏହାର । ୪୦ ।

ବୋଲା ବୋଲି ହେଉଛନ୍ତି ନଗ୍ରନାରୀ ଗଣ
ପ୍ରତିଜ୍ଞା କରିଣ ଆସି ମିଳିଲା ରୁକ୍ମଣ
ବୋଇଲ ଛଡ଼ାଇ ଘେନି ଆସିବି ରୁକ୍ମିଣୀ
ନୋହିଲେ ବାହୁଡ଼ି ନଗ୍ରେ ନ ପଶିବି ପୁଣି । ୪୧ ।

୩୭-୪—ତେମନେକ ପ୍ରାପ୍ତ କନ୍ଦନେଲେ (ଟ) । ୪୦-୧ ତର ବସିଛ (ଗ) ।

---

୩୭ । କଣ୍ଠୀରବ—ସିଂହ । ଚକ୍ରପାଣି—ହାତରେ ସୁଦର୍ଶନ ଚକ୍ର ଧରିଥିବା କୃଷ୍ଣ । ନାଗ—ସାପ । ବଳ—ଅହାର । ୩୮ । ରେବତୀର ସାଇଁ—ବଳରାମ ।
୩୯ । ଭାଜନ—ଯୋଗ୍ୟ, ପାତ୍ର ।

ନିଜ ବଳ ଘେନିଣ ରୁକ୍ମିଣ ଚଳି ଗଲା
ଥୋକାଏକ ଦୂରେ ଯାଇ ବାହୁଡ଼ି ଓଗାଳିଲା
ରୁକ୍ମିଣୀଙ୍କ କୋଳରେ ବସାଇ ଭଗବାନ
ଯେସନେ ବିଜୁଳି ଲତା ସ୍ଥିର ନବଘନ । ୪୨ ।

ଅନେକ ସମର ଉତ୍ତାରୁଁ କଳ୍କି ରୁକ୍ମିଣ
କାଟିଲେକ ତାର ରଥୁଁ ଅଶ୍ୱ ଧନୁଗୁଣ
ଧରନେଇ କେଶ ତାର ସାତ ଭାଗ କଲେ
ରଥର ସ୍ତମ୍ଭରେ ନେଇ ବାନ୍ଧି ପକାଇଲେ । ୪୩ ।

ଜରାସନ୍ଧ ସଙ୍ଗତେ ସମର ହଳପାଣି
ମାଇଲେ ଅନେକ ରଥୀ କବନ୍ଧ ମାରେଣି
ରାଜାମାନେ ପଳାଇଲେ ଯେ ଯାହାର ପୁର
ବଳଭଦ୍ର ଭେଟିଲେ ଯାଇଣ ଚକ୍ରଧର । ୪୪ ।

ଦେଖିଲେ ରୁକ୍ମିଣ ରଥେ ହୋଇଛି ବନ୍ଧନ
କଲେ ରାମ ଗୋବିନ୍ଦଙ୍କୁ ଅନେକ ଗଞ୍ଜନ
ଭଗ୍ନୀଙ୍କ ତାହାର ଯେ ଅନେକ ବୋଧ ଦେଲେ
ଆପଣେ ଉଠିଣ ତା ବନ୍ଧନ ଫେଡ଼ି ଦେଲେ । ୪୫ ।

୪୨-୧—ବେଗେ ଗଲା (ଖ) । ୪୨-୨—ଥରେ ଓଗାଳିଲା (ଢ) ।
୪୨-୩—ନାରାୟଣ (କ) ।
୪୫-୧—ବନ୍ଧନ ହୋଇଅଛନ୍ତି ରୁକ୍ମଣ (ଢ) ।

---

୪୨ । ବିଜୁଳିଲତା ସ୍ଥିର—ଥିର ବା ଅଚଞ୍ଚଳ ବିଜୁଳି ଗାର । ନବଘନରେ—ନୂଆମେଘରେ ।
୪୩ । ସମର —ଯୁଦ୍ଧ । ୪୪ । ହଳପାଣି—ବଳରାମ । କବନ୍ଧ ମାରେଣି—ମୁଣ୍ଡହିଣା ଦାଣ ।

ତହୁଁ ବାହୁଡ଼ିଲା ସେ ରୁକ୍ମଣ ମହାବୀର
ନ ପଶିଲା ତାର ନିଜ କଟକ ଭିତର
ଭୋଜ କଟକ ବୋଲିଣ ନଗ୍ରେକ ଭିଆଇ
ଅପଣାର ବଳ ଘେନି ରହିଲାକ ତହିଁ । ୪୬ ।

ବାହୁଡ଼ି ବିଜୟେ ବଳଭଦ୍ର ନାରାୟଣ
ବାଜଇ ସେ ବୀର ତୂର ଢମକ ନିଶାଣ
ଦ୍ୱାରବତୀ ପୁରେ ଯାଇ ପ୍ରବେଶ ହୋଇଲେ
ଗୋବିନ୍ଦ ଅଇଲେ ବୋଲି ସମସ୍ତେ ଧାଇଁଲେ । ୪୭ ।

ପାଛୋଟି ଅଇଲେ ସେ ଯେ ରାଜା ଉଗ୍ରସେନ
ବାହାର ହୋଇ·ଲେ ଶୁଣି ନଗ୍ର ନାରୀଜନ
କେ ବୋଲଇ ଦେଖ ଗୋ କନ୍ୟାର ରୂପ ଗୁଣ
କେଉଁ ବିହି ଗଢିଲାକ ଏକା କୁସୁମେଣ । ୪୮ ।

ବଦନ ଗଢିଲା ଗୋ ବିକଚ ପଦ୍ମ ଦେଇ
ନୟନ କରଣ ଇନ୍ଦୀବର ଅଛି ଥୋଇ
ନାସିକା ଘଟଣ ଦେଖ ତିଳ ଫୁଲ ଜାଣି
ଦନ୍ତପନ୍ତି ବସାଇଲା କୁନ୍ଦ କଢ଼ି ଆଣି । ୪୯ ।

୪୬-୩—କଟକ ଭିଆଇ (ଗ) ।

---

୪୭ । ନିଶାଣ – ନାଗରା ।

୪୮ । ଏକା କୁସୁମେଣ—ଖାଲି ବା କେବଳ ଫୁଲରେ ।

୪୯ । ବିକଚ ପଦ୍ମ—ଫୁଟିଲା ପଦ୍ମ । ଇନ୍ଦୀବର—ନୀଳକଇଁ । ତିଳଫୁଲ—ଛଣା ଫୁଲ ।

ଅଧର ବଶଇ ଦେଖ ବନ୍ଧୁଲିର ରଙ୍ଗ
କେତକୀ କୁସୁମେ ବହୁ ନିର୍ମାଣିଲା ଅଙ୍ଗ
ଶିରୀଷ କୁସୁମେ କଲା ଅଙ୍ଗ ଶୋଭାବନ
କମଳ-କୋରକ କ ଯୋଇଲା ଯଉବନ । ୫୦ ।

କୋକନଦ ଘଟଣ କଲାକ ପାଦତଳ
ଚମ୍ପକ କଳିକା ଦେଇ ଗଢିଲା ଅଙ୍ଗୁଳ
ମନ୍ଦାର କୁସୁମ କରତଳର ଅରୁଣ
ମୂର୍ତ୍ତିବନ୍ତ ହୋଇଛି ମଦନ ଫୁଲ ବାଣ । ୫୧ ।

ଭଲା ବହୁ କାହିଁ ଥାଇ ଘଟାଇଲୁ ଆଣି
ଶ୍ୟାମଳ ଅଙ୍ଗକୁ ହେମ ବରଣ ତରୁଣୀ
ବୋଲା ବୋଲି ହେଉ ନିଜ ମନ୍ଦିରେ ପ୍ରବେଶ
ରୁକ୍ମିଣୀକି ଘେନି ଗଲେ ବସୁଦେବ ପାଶ । ୫୨ ।

ପିଅର ଜନନୀ ପାଦେ ଓଳଗ ମେଲାଇ
ଦେଖି ବସୁଦେବ ସେ ଆନନ୍ଦ ସୁଖ ପାଇ
ଏଥି ଅନନ୍ତରେ ହୋଏ ବଭାକୁ ବଗ୍ଭର
ଭଣିଲା କାର୍ତ୍ତିକ ଜଗନ୍ନାଥ କୃପା କର । ୫୩ ।

୫୦-୨—ସଖି ! ନିର୍ମାଣିଲ (ଢ) ।
୫୦-୩—ମାଳାରେ କଲ ବାହା (ଢ) । ୫୧-୧—ଦେଇଣ ଗଢିଲ (ଖ) ।

୫୦ । ଶୋଭାବନ—ସୁନ୍ଦର । କମଳ-କୋରକ—ପଦ୍ମକଢି । ଯଉବନ—ଏଠାରେ ସ୍ତନକୁ ଲକ୍ଷ୍ୟ କରାଯାଇ ଅଛି ।
୫୧ । କୋକନଦ—ରକ୍ତପଦ୍ମ । ଘଟଣ—ଯୋଜନା ବା ସୁନ୍ଦର । [illegible]ଣ—ଏସ୍ଥଳରେ ଅରୁଣିମା ଅର୍ଥରେ ପ୍ରଯୁକ୍ତ, ଲାଲ ।

# ଅଷ୍ଟମ ଛାନ୍ଦ

ଦଶ—କେଦାର—ମୁନିବର ବାଣୀ

ଏଥୁ ଅନନ୍ତରେ ଶୁଣ ଚଉଡ ପଦ୍ମ ପୁରାଣ ।
ରୁକ୍ମିଣୀ ବିଭା ଅନଙ୍କ ଅଷ୍ଟମ ଛାନ୍ଦ ଯେ । ୧ ।

ଉଗ୍ରସେନ ବସୁଦେବ ଉଦ୍ଧବ ରାମ ମାଧବ
ଅକ୍ରୂର ସହୁତେ ଆସି ଆସନେ ବସି ଯେ । ୨ ।

ନାରଦ ବ୍ୟାସ କପିଳ ଗାଗ୍ରବ ମୁନି ସକଳ
କୁଳବୃଦ୍ଧଜନ ମାନେ ବସି ଆସ୍ଥାନେ ଯେ । ୩ ।

ବସୁଦେବ ତହିଁ କହେ ଶୁଣ ଉଗ୍ରସେନ ରାଏ
ଗାଗ୍ର ଦେଲେ ଅନୁକୂଳ ବିଭା ମଙ୍ଗଳ ଯେ । ୪ ।

ଆସନ୍ତା ଦଶମୀ ତିଥି ବାର ହେବ ବୃହସ୍ପତି
ସମ୍ଭାର ତିଆଣ କର ଲୋକନ୍ତ ବର ଯେ । ୫ ।

ଶିଳ୍ପୀକଙ୍କୁ ଆଜ୍ଞା ଦିଅ ଆସି ବିଭା କରୁ ଛିଅ
ଛାମୁଣ୍ଡିଆ ବେଦୀ ସଜ ହୋଇବ ଅଜ ଯେ । ୬ ।

ରାଜ ଇନ୍ଦ୍ର ଅଭିଷେକ ତହିଁ ଥିଲେ ଯେତେ ଲୋକ
ତୁମ୍ଭର ଆଜ୍ଞା ପ୍ରମାଣ ଆସିବେ ପୁଣ ଯେ । ୭ ।

ମାରକଣ୍ଡ ଋଷି କହେ ଏ ବାଣୀରେ ଗାଇବ (କ) । ୪-୧—ବସୁଦେବ ବାର (ଖ)
୫-୧—ପଞ୍ଚମୀ (ଗ)

---

୩-। ଆସ୍ଥାନେ—ଆସନରେ । ୫ । ବୃହସ୍ପତି—ଗୁରୁ । ସମ୍ଭାର—ଦ୍ରବ୍ୟର ଯୋଗାଡ଼ ।
ଲୋକନ୍ତ ବର—ଲୋକଙ୍କୁ ବରଣ କର ।

ଶୁଣି ଉଗ୍ରସେନ ରାଏ ଭୁବନେ ଡ଼ଗର ରାଏ
ଅଜ୍ଞା ପତ୍ର ଲେଖ ଦେଇ ମୃଦ ବସାଇ ଯେ । ୮ ।

ଅଜ୍ଞା ଘେନିଣ ଅନେକ ଦେଶେ ଦେଶେ ଗଲେ ଲୋକ
ରାଜାଙ୍କୁ ଅଜ୍ଞା ଲଗାଇ ସକଳ କହି ଯେ । ୯ ।

ଅଜ୍ଞା ଦେଲେ ଚକ୍ରଧର ଦୂତ ଯାଉ ଗୋପପୁର
ଆସିବେ ନନ୍ଦ ଯଶୋଦା ଦେଖିବେ ବିଭା ଯେ । ୧୦ ।

ସକଳ ଗୋପ ଯୁବତୀ ଆସିବେ ସେ ଦ୍ୱାରବତୀ
ସୁଦାମ ଦାମ ସଙ୍ଗାତ ଆସିବେ ଏଥ ଯେ । ୧୧ ।

ବୋଇଲେ ଉଦ୍ଧବ ଯାଅ ଗୋପୀଙ୍କ ଅଗରେ କହ
ଆମ୍ଭର ବିଭା ଆନନ୍ଦ କରିବେ ନନ୍ଦ ଯେ । ୧୨ ।

ଯେମନ୍ତେ ଆସନ୍ତି ଆଯୀ ତେମନ୍ତ କହିବ ଯାଇ
ଉଦ୍ଧବ ଅଜ୍ଞା ପ୍ରମାଣେ ଗଲେ ତକ୍ଷଣେ ଯେ । ୧୩ ।

ସୁରପତିଙ୍କି ବରିଣ ନାରଦ ଗଲେ ଘେନିଣ
ଇନ୍ଦ୍ର ଛାମୁରେ ଜଣାଇ ସଭାର ପାଇଁ ଯେ । ୧୪ ।

ଅଜ୍ଞା ପାଇ ବିଶ୍ୱକର୍ମା କଲେକ ସଭା ଘଟଣା
ଉପମା ଦେବାକୁ ନାହିଁ ବର୍ଣ୍ଣିବା କାହିଁ ଯେ । ୧୫ ।

୮-୧—ଡ଼ଗରମାନଙ୍କୁ (କ) ।
୯-୧—ରଜ୍ୟେ ବଜ୍ୟେ (କ) । ୯-୨—ସମଳ ପାଇ (କ) । ୧୪-୨—ସମ୍ଭାର (କ) ।
୧୫-୧—ତେଜା ଘଟଣା (କ) ।

---

୮ । ଗଏ—ଡଙ୍କାଏ । ମୃଦ—ମୋହର । ୧୩ । ଆଯୀ—ମାଅ । [redacted] । ସୁରପତିଙ୍କି
—ଇନ୍ଦ୍ରଙ୍କୁ । ୧୫ । ଘଟଣା—ନିର୍ମାଣ ।

ଅଟଗଣ ବିବୁଧ ସ୍ୱୟେ ସଜ୍ଞା ଦେଇ ପଠିଥାଏ
ସୁଧର୍ମା ନାମ ତାହାର ଗୁଣ ଅପାର ସ୍ୱେ । ୧୬ ।

କୋଟି କୋଟି ଲୋକ ଯାଇ ବସିଲେ ଛଇଦ ହୋଇ
ହରଇ କ୍ଷୁଧା ପିପାସ ଅମର-ବାସ ସ୍ୱେ । ୧୭ ।

ବୃଦ୍ଧଜନ ଯୁବା ହୋୟେ ଯହିଁ ନାହିଁ ରୋଗ ଭୟେ
ଯାହା ଇଚ୍ଛା କରେ ମନ ପାଏ ତକ୍ଷଣ ସ୍ୱେ । ୧୮ ।

ତଡ଼ାଗ କୂପ ପୋଖରୀ ସ୍ଥାନେ ସ୍ଥାନେ ଅଛି ପୂରି
ଅମୃତ ମଧୁର ଜଳ ସ୍ୱାଦୁ ଶୀତଳ ସ୍ୱେ । ୧୯ ।

ଠାବେ ଠାବେ ସିଂହାସନ ସର୍ବଦା ବସନ୍ତ-ସ୍ଥାନ
ଭ୍ରମନ୍ତି ଶୁକ କୋକିଲ ସୁସ୍ୱାଦୁ ଫଳ ସ୍ୱେ । ୨୦ ।

ସୂର୍ଯ୍ୟର କର ଉପତ ଯହିଁ ସେ ଚନ୍ଦ୍ରମା ମତ
ସ୍ୱତେଜେ ସୂର୍ଯ୍ୟ ପର୍ଯ୍ୟେ କ ଶୋଭା ପାଏ ସ୍ୱେ । ୨୧

ପାରିଜାତ କୁସୁମେଣ ଚନ୍ଦ୍ରାତପ ଉପରେଣ ।
ବରଷେ କୁସୁମ ମାନ ହୃଦସ୍ଥ ରମ୍ୟ ସ୍ୱେ । ୨୨ ।

୧୬-୧—ସମ୍ଭାର ସେ (କ) । ୧୭ ୧—ଲୋକ ଯାଏ; ଛଇଦ ହୋଏ ।
୧୯-୧—ଉତ୍ତମ କୂପ (ଖ) । ୧୯ ୨—ଅତି ଶୀତଳ (କ) ।
୨୧-୨—ଶୋଭା ସେ ପାଏ ସ୍ୱେ (ଂ) ।

---

୧୬ । ବିବୁଧ ସ୍ୱୟେ—ଇନ୍ଦ୍ର । ୧୭ । ଛଇଦ—(ସ୍ୱଚ୍ଛନ୍ଦ ଶବ୍ଦର) ମନ ମୁତାବକ, ସ୍ୱେଚ୍ଛା ।
୧୮ । ହରଇ କ୍ଷୁଧା ପିପାସ—ଭୋକ ଶୋଷ ଦୂରକରେ । ଅମର ବାସ—ଦେବତାମାନଙ୍କ ବାସ କରିବାର ସ୍ଥାନ, ସ୍ୱର୍ଗ । ୧୯ । ତଡାଗ—ପୋଖରୀ । ସ୍ୱାଦୁ—ସୁସ୍ୱାଦ, ମିଠା ।
୨୧ । ସୂର୍ଯ୍ୟର କର ଉପତ—ସୂର୍ଯ୍ୟଙ୍କ କିରଣର ତାପ । ଉପତ ଶବ୍ଦ [illegible] ବ୍ୟବହୃତ । [illegible] ସମୀଚୀନ ହେବ । ୨୨ । ଚନ୍ଦ୍ରାତପ—ଚାନ୍ଦୁଆ ।

୫ ରୁକ୍ମିଣୀ

ସଭା ହୋଏ ପରବେଶ     ଦେଖିଣ ଜନେ ହରଷ ।
ବସିବେ ମର୍ତ୍ତ୍ୟ ରାଜନ     ହୋଇବ ଧନ୍ୟ ଯେ । ୨୩ ।

ଉଗ୍ରସେନ ଆଜ୍ଞା ପାଇ     ନୃପତି ବୃନ୍ଦ ଚଳାଇ ।
ଦ୍ୱାରକା ଦେଖିଲେ ଯାଇଁ     ବସ୍ତୁଯେ ଗୃହେଁ ଯେ । ୨୪ ।

ହୀରା ନୀଳା ମଣି ଗଣ     ମୋତି ଗୁନ୍ଥା ତୋରଣ ।
ବଇଡ଼ୂର୍ଯ୍ୟ ମଣି ସ୍ତମ୍ଭ     ଦ୍ୱାର ଅରମ୍ଭ ଯେ । ୨୫ ।

ଉଗ୍ରସେନଙ୍କୁ ଦର୍ଶନ     କଲେକ ସବୁ ରାଜନ ।
ନତ୍ରଛାଳନ୍ତ ପକାଇ     ସାଷ୍ଟାଙ୍ଗ ହୋଇ ଯେ । ୨୬ ।

ପୁଣି ଉଠି ଶିରେ ହାଥ     ଦେଇ ଉଭା ନରନାଥ ।
ଆଜ୍ଞା ଦେଲେ ଭୋଜରାଯେ     ଶୁଭେ ତ ଅଯେ ଯେ । ୨୭ ।

ତହୁଁ ନୃପଗଣ ଯାଇଁ     ଦର୍ଶନ କମଳାସାଇଁ
ପବିତ୍ର କଲେକ ଆଖି     ଶ୍ରୀମୁଖ ଦେଖି ଯେ । ୨୮ ।

ଆଜ୍ଞା ଦେଲେ ଯଦୁବୀର     ବସ ସଭାର ଉପର
ଅଇଲ ସମସ୍ତ ରାଣ     ଦୁଖ ପାଇଣ ଯେ । ୨୯ ।

ଆଜ୍ଞା ପାଇ ନୃପବର     ହୋଇଲେ ଯାଇ ସଭାର
ବୋଲନ୍ତି ଏକ ଅରକ     କ ସଭା ଏତ ଯେ । ୩୦ ।

ସଭାର ନିକଟ ମାତ୍ର     କେବଳ ପଦ୍ମ ନେତ୍ର
ବଳ ରୂପ ଦେହ ବର୍ଣ୍ଣି     ନୁଏ ତଯଣ ଯେ । ୩୧ ।

୨୪-୨—ଥାଇ ସେ (କ) । ୨୯-୧—ବସିଥି ଯାଇ ସଭାର (ଖ) । ୩୦-୨—ଏକ (ଖ) ।

୫ । ଅରମ୍ଭ—ଶୋଭା । ୨୬ । ନତ୍ରଛାଳନ୍ତ ପକାଇ—ଦଣ୍ଡବତ ହୋଇ ବା ବନ୍ଦନା କରି ।

ବୃଷ୍ଣିର ଆଜ୍ଞା ପ୍ରମାଣେ ମର୍ତ୍ତ୍ୟଲୋକ ରାଜାଗଣେ
ଦେବ ସଭାରେ ବସିଲେ ଧନ୍ୟ ହୋଇଲେ ସେ ।୩୨।

ଉଦ୍ଧବ ଗୋକୁଳ ଯାଇ ନନ୍ଦ ଯଶୋଦାଙ୍କୁ ଯାଇ
ଚରଣେ ପଡ଼ିଣ କହେ ଶୁଣିମା ସ୍ନେହେ ସେ । ୩୩ ।

ଉଦ୍ଧବ କହଇ ପୁଣି ଶୁଣିମାଳ ନନ୍ଦରାଣି !
ତୁମ୍ଭର ପୁତ୍ର କେଶବ ଅଛନ୍ତି ଶୁଭ ସେ । ୩୪ ।

ସକଳ ଶତ୍ରୁ ମାରିଣ ବିଜେ ଦ୍ୱାରକା ପୁରେଣ
ବାହା ହୋଇବେ ଗୋବିନ୍ଦ ଯିବେ ଏ ନନ୍ଦ ସେ । ୩୫ ।

ତୁମ୍ଭର ପାଦେ ପଡ଼ିଣ ବୋଲିଛନ୍ତି ନାରାୟଣ
ଜନନୀ ଆସିବେ ଯେବେ ହଉନ୍ତି ତେବେ ସେ । ୩୬

ଭୀଷ୍ମକ ନୃପତିବର ରୁକ୍ମିଣୀ ନାମ ତାହାର
ଦୁହିତା ଅତି ସୁନ୍ଦରୀ ଆଣିଲେ ହରି ସେ । ୩୭ ।

ଆସନ୍ତା ଦଶମୀ ଦିନ ବେଳ କାଳ ଶୁଭ ଲଗ୍ନ
ତୁମ୍ଭେ ବିଜେ କରିଯିବ ବାହା କରିବ ସେ । ୩୮ ।

ଗୋପୀ ଗୋପାଳଙ୍କୁ ଆଣ ଦେଇଣ ଛାନ୍ଦ ବରଣ
ବେଗେଣି ବାହାର ହୁଅ ବାହା କରାଅ ସେ । ୩୯ ।

ଶୁଣିଣ ଗୋକୁଳ ଲୋକ ହୋଇଲେ ଅତି ଉତ୍ସୁକ ।
ବୋଇଲେ ଦ୍ୱାରକା ଯିବା ବାହା ଦେଖିବା ସେ । ୪୦ ।

ଆମ୍ଭର କୃଷ୍ଣ ଗୋ ତହିଁ ମହାରାଜା ଛନ୍ତି ହୋଇ
ଶୁଣୁଥାଇ ଯାହା କର୍ଣ୍ଣେ ଦେଖୁ ନୟନ ସେ । ୪୧ ।

୩୮.୧—ପଞ୍ଚମୀ (ଖ) । ୪୦.୨—ବୋଲନ୍ତି, କହ (ଢ) । ୪୧.୧—ସେହୁ ହୋଇ (ଝ)

ନନ୍ଦ ଯଶୋଦା ଗୋପାଳ ଗୋପୀମାନେ ହେଲେ ମେଳ
ସମ୍ଭାର-ମାନଙ୍କୁ ସାଜେ ନିଷାଣ ବାଜେ ଯେ ॥ ୪୨ ॥

ଶକଟ ରଥ ସଜାଇ ବସିଲେ ଯୁବତୀ ଯାଇ
ଶ୍ରୀକୃଷ୍ଣ ଗୁଣ ଚରିତ ଗାବନ୍ତି ଗୀତ ଯେ ॥ ୪୩ ॥

ଯାଇଣ ଦ୍ୱାରକା ପାଇ ଶୁଣି ବସୁଦେବ ଧାଇଁ
ରାମ କୃଷ୍ଣ ଘେନି ସଙ୍ଗେ ଚଳନ୍ତି ରଙ୍ଗେ ଯେ ॥ ୪୪ ॥

ଥୋକାଏ ଦୂର ଯାଇଣ ଦେଖିଲେ ସେ ବ୍ରଜଗଣ
ଗଦ ଗଦ ଅଶ୍ରୁ-ମୁଖୀ ପୁତ୍ରଙ୍କୁ ଦେଖି ଯେ ॥ ୪୫ ॥

ଯଶୋଦା ଆନନ୍ଦେ ଅନ୍ଧ ଦେଖିଲେକ କୃଷ୍ଣଚନ୍ଦ୍ର
କୋଡ଼ରେ ଧରି ଅଧୀର ସ୍ରବୁଛି କ୍ଷୀର ଯେ ॥ ୪୬ ॥

ରାମ କୃଷ୍ଣ ଧରି ନନ୍ଦ ପଡ଼ିଲେ ହୋଇ ଆନନ୍ଦ
ନୟନେ ଝଳିବା ପ୍ରାୟେ ହୋଇଣ ଗୃହେ ଯେ ॥ ୪୭ ॥

ଗୋପପୁର ନର ନାରୀ ଭାସିଲେ ଆନନ୍ଦ ବାରି
ନୟନେ ନିମିଷ ନାହିଁ ରହିଲେ ଚାହିଁ ଯେ ॥ ୪୮ ॥

ଚୁମ୍ବ ଦେଇ ଯଶୋବନ୍ତୀ ମଉଳି-କେଶ ଶୁଙ୍ଘନ୍ତି
ସେ ସୁଖ ବର୍ଣ୍ଣିବା କିସ ନ ଜାଣେ ବ୍ୟାସ ଯେ ॥ ୪୯ ॥

ସୁଦାମାର ମୁଖ ଚାହିଁ ହସିଲେକ ଯଦୁସାଇଁ
ବୋଲନ୍ତି ଭୁଜେ ଭିଡ଼ିଣ ଆମ୍ଭର ପ୍ରାଣ ଯେ ॥ ୫୦ ॥

୪୪-୨—ସଙ୍ଗେ ଯାଏ ଲୋଚନ୍ତି ପାଦେ (ଗ) । ୪୭-୨—ନୟନେ ଗଳିବା (ଙ) ।
୪୩-୧—ରଥ ଛାଆଇ (ଙ) ।

---

୪୨ । ସମ୍ଭାର ମାନଙ୍କୁ—ବିଭାର ଅପ୍ରୋଜନ ସାମଗ୍ରୀମାନ ସଜିଲ ହେଲା । ନିଷାଣ – ନାଗରା ।
୪୮ । ନିମିଷ—ପିଛୁଡ଼ା । ୪୯ । ମଉଳି—ମୁଣ୍ଡ ।

ରବି ଦେଖି ପଦ୍ମବନ ବିକାଶ ହୋଏ ଯେସନ
ସବର୍ହେଁ ହରଷ ମୁଖ ଛାଡିଲେ ଦୁଖ ସ୍ନେ । ୫୧ ।

ବସୁଦେବ ନନ୍ଦ ଦୁଇ ଭେଟି ଆଲିଙ୍ଗନ ଦେଇ
ହୋଇଲେକ ସମ୍ଭାଷଣେ ବୋଇଲେ ଧନ୍ୟ ସ୍ନେ ।୫୨।

ବସୁଦେବ ନବରେଣ ଅଧେ ଦେଲେ ସଜାଡ଼ଣ
ରହିଲେ ଗୋପାଳେ ଯାଇ ଯଶୋଦା ଦେଇ ସ୍ନେ । ୫୩

ଶୁଣିଣ ଶ୍ରୀକୃଷ୍ଣଙ୍କ ବାକ୍ୟେ ପରମ ଆନନ୍ଦ ହୋଏ
ଆଜ୍ଞା ଘେନିଲେକ ଶିର ହେଲେ ବାହାର ସ୍ନେ । ୫୪ ।

ବାହାର ହୋଇ ଭୂପାଳ ସଙ୍ଗେ ଚତୁରଙ୍ଗ ବଳ
ବାଜଇ ବୀର ନିଶାଣ ଠମକ ଠାଣ ସ୍ନେ । ୫୫ ।

ପୁରୋହିତ ଅମନାତ୍ୟ ଘେନିଣ ସଙ୍ଗେ ବହୁତ
ଗଜ ପିଠିରେ ସମ୍ଭାର ଦେଇ ଅପାର ସ୍ନେ । ୫୬ ।

ବସାଙ୍କୁ ବସା ଚଳାଇ ଗଲେକ ବିଦର୍ଭ ସାଇଁ
ଦ୍ୱାରକା ପୁରେଣ ଭେଟି ହୋଇଲେ ଥାଟି ସ୍ନେ । ୫୭

ଡ଼ଗର ଜଣାଇ ଯାଇ ଶୁଣିମାକ ଯଦୁସାଇଁ
ଅଇଲେ ଶ୍ରୀକୃଷ୍ଣ ବାକ୍ୟେ ନିକଟେ ହୋଏ ସ୍ନେ । ୫୮ ।

ପାଶ୍ୱେ ଯାଇ ଅକ୍ରୂର ଅଣିଲେକ ନୃପବର
ଉଗ୍ରସେନଙ୍କୁ ଦର୍ଶନ କଲେ ବନ୍ଦନ ସ୍ନେ । ୫୯ ।

୫୧—ସମସ୍ତେ ଆନନ୍ଦ (କ) । ୫୨-୧—ତାହିଁ (କ) । ୫୪-୨—ହୋଏ (ଗ) ।
୫୫-୨—ବାଜଇ ଘର୍ଘେ (ଖ) । ୫୬-୨ ଗଜ ପିଠି ଉଠ ହର, ବଳେ ସମାର ସ୍ନେ (ଘ) ।

୫୧ । ରବି—ସୂର୍ଯ୍ୟ । ୫୨ । ସମ୍ଭାଷଣେ—କଥାବାର୍ତ୍ତା ।

ରାହୁତ ମାହୁନ୍ତ ବଲ ପାତ୍ର ସାମନ୍ତ ସକଲ
ରତ୍ନମୟ ପୁର ପାଇ ରହିଲେ ଯାଇଁ ସ୍ୱେ । ୬୦ ।

ଯେତେ ଅଇଲେ ରାଜନ ଷଡରସେଣ ଭୋଜନ
କରଣ ବସନ୍ତ· ସଭା କ ଭାଗ୍ୟ ଅବା ସ୍ୱେ । ୬୧ ।

ଅନେକ ସମ୍ଭାର ନେଇ ଶ୍ରୀକୃଷ୍ଣକ ନବରେ ଦେଇ
ରାମ ବସୁଦେବ ଆସି ମଥୁରେ ଭାସି ସ୍ୱେ । ୬୨ ।

ବୋଲନ୍ତି ସେ ବସୁଦେବ କାଲି ବଭା ଦନ ହେବ
ଆଜ ମଙ୍ଗଲଣ ଘର ଭୋ ନୃପବର ସ୍ୱେ । ୬୪ ।

ସିଂହାସନେ ଜଗନ୍ନାଥ ଶଙ୍ଖ ଚକ୍ର ବେନ ହାଥ
କାର୍ତ୍ତିକ ଦୀନ ଶରଣ ପଦ୍ମଚରଣ ସ୍ୱେ । ୬୪ ।

୬୦·୧—ବଢ଼ି କାଲ ସେ ହୋଇବ (ଟ) । ୬୩·୨—ମଙ୍ଗଳବାର (କ) ।

# ନବମ ଛାନ୍ଦ

---

## ଦଶ-ମଙ୍ଗଳ, ଉଷା ଦ୍ୱିତୀୟ ଛାନ୍ଦ ବାଣୀ

ଶୁଣ ସାଧୁଜନ ପଦ୍ମ ପୁରାଣ ଏ ବାଣୀ ।
ଯୁବତୀ ମିଳଣି କଲେ ମଙ୍ଗଳ ରୁକ୍ମିଣୀ । ୧ ।

ହୁଳହୁଳି ଦେଇ ଗୀତ ଗାବନ୍ତି ସେ ନାରୀ ।
ବାଜଇ ସେ ଯୋଡା ଶଙ୍ଖ ମଙ୍ଗଳ ମହୁରୀ । ୨ ।

ଦେବକୀ ରୋହିଣୀ ବସୁଦେବ ନାରୀବୃନ୍ଦ ।
ସମସ୍ତେ ମଙ୍ଗଳ କରି ହୋଇଲେ ଆନନ୍ଦ । ୩ ।

ଅଇଲେ ଯଶୋଦା ଦେବୀ ସୀମନ୍ତିନୀ-ଗଣ ।
ଗାବନ୍ତି ଶ୍ରୀକୃଷ୍ଣ କଥା ମଙ୍ଗଳ କାରଣ । ୪ ।

ବୃଦ୍ଧ ମାନେ ତହିଁ ଦେବ-ପୂଜାବିଧି କଲେ ।
ରତ୍ନ-ପୀଠର ଉପରେ କନ୍ୟା ବସାଇଲେ । ୫ ।

ମଙ୍ଗୁଳିଲେ ହଳଦୀ କୁସୁମ ବୋଳି ଦେଇ ।
ଦେବାଙ୍ଗ-ପଢନୀ ନୂଆ ବସ୍ତ୍ରକ ପିନ୍ଧାଇ । ୬ ।

ନୃତ୍ୟ ଗୀତ କରନ୍ତି ସେ ଦେଇ ହୁଳହୁଳି ।
ଏକ ମୁଖେ ଆରେକ କୁଙ୍କୁମ ବୋଳା ବୋଳି । ୭ ।

ଦଶ—ମାନବ । ଦଶରଥ ଘରେ ମିଳିଲେ ଏ ବାଣୀ (ଟ) ।
୭-୧—ଦେଖଣ (ଖ) । ୭-୨—ନେଇ ବୋଳି (ଟ) ।

---

୪ । ସୀମନ୍ତିନୀ ଗଣ—ସ୍ତ୍ରୀମାନେ ।୬। ଦେବାଙ୍ଗ ପଢନୀ ନୂଆ ବସ୍ତ୍ରକ—ଦେବ [illegible]ରେ ଲାଗି ହୋଇଥିବା ନୂଆ ଲୁଗା ।

ସୁବର୍ଣ୍ଣ ଘଟେକ ନେଇ ଜଳରେ ବୁଡ଼ାଇ ।
ମଙ୍ଗଳ କରଣ ବାଳୀ ହୁଳ ହୁଳ ଦେଇ ।୮।

କଣ୍ଠେ ବସ୍ତ୍ର ବେଢ଼ି ନଈକୂଳ ଉପରେଣ ।
କାଖେ କୁମ୍ଭ ଘେନ ଆଣି ଥୋଇଲେ ଘରେଣ ।୯।

ଲାଜ ଭସ୍ମ ଛଡ଼ିଲେ ସେ ଅନ୍ତପୁର ନାରୀ ।
ହଳଦ ଚନ୍ଦନ ଘେନ ହୋନ୍ତି ମରାମରି ।୧୦।

ମଙ୍ଗଳ ବିନୋଦ ଖେଳ ଖେଳନ୍ତି କାମିନୀ ।
ଏଥୁ ଅନନ୍ତରେ ହୋଏ ପ୍ରବେଶ ଯାମିନୀ ।୧୧।

ଗ୍ରାମଦେବତାଇ-ପୁରେ ବାହାର ହୋଇଲେ ।
ବଜାଇ ମଙ୍ଗଳ ଶଙ୍ଖ ହୁଳହୁଳ ଦେଲେ ।୧୨।

ବରଣ କଲେକ ଯାଇ ଗ୍ରାମଦେବତାଈ ।
ଗନ୍ଧପୁଷ୍ପ ଚଢ଼ାଇଣ ନଇବଦ୍ୟ ଦେଇ ।୧୩।

ଦାଣ୍ଡବୁଲି ଘରେ ଘରେ ଢାଳନ୍ତି ସେ ଜଳ ।
ହୁଳହୁଳ ଦେଇ କଲେ ମଙ୍ଗଳ ଚହଳ ।୧୪।

ବାହୁଡ଼ି ଯୁବତୀ ପୁରେ ପଶିଲେକ ଯାଇଁ ।
ବେଦୀ ମଣ୍ଡୁଛନ୍ତି ରାଜା ଉଗ୍ରସେନ ଥାଇ ।୧୫।

ଏଥୁ ଅନନ୍ତରେ କଣି ପାହାନ୍ତି ଶୁଭେଣ ।
ବାଜଇ ସେ ବୀରତୂର ଠମକ ନିଶାଣ ।୧୬।

୯-୧—କଣ୍ଠେ ବସ୍ତ୍ର ଦେଇ (ଗ)। ୯-୨—ଅଣି ହୋଇଲେ (ଗ)। ୧୧-୨—ରଜନୀ (ଚ)।

---

୯। ନଈକୂଳ—ନଈଅ। ୧୧। କାମିନୀ—ସ୍ତ୍ରୀ। ଯାମିନୀ—ରାତ୍ର।
୧୬। ନିଶାଣ—ନାଗରା।

ଉଗ୍ରସେନ ଅସ୍ଥାନରେ ବଜେ କଲେ ଯାଇଁ ।
ଶ୍ରୀକୃଷ୍ଣ ରାଜାଙ୍କୁ ତହିଁ ଦେଲେ ବସାଇ । ୧୭ ।

ବେଦବ୍ୟାସ ନାରଦ ଅନେକ ଋଷି ବସି ।
ଲକ୍ଷ୍ମୀନାରାୟଣ ବଭା କରିବାକୁ ଅସି । ୧୮ ।

ରାଜାମାନେ ଅସିଣ କଲେକ ଦରଶନ ।
ପୂରିଣ ବସିଲେ ସଭା ଇନ୍ଦ୍ରର ଭୁବନ । ୧୯ ।

ବସୁଦେବ ରାମ ଯେ ନନ୍ଦଙ୍କୁ ଘେନି ଅସି ।
ବେଦୀର ନକଟ ଘେନ ଅବୋରଣ ବସି । ୨୦ ।

ଶ୍ରୀକୃଷ୍ଣଙ୍କୁ ବୋଇଲେ ବରଣ-ସଜ୍ଜା ଅଣ ।
ଲଗ୍ନବେଳ ହୋଇଲାକ କରିବା ବରଣ । ୨୧ ।

ଏସନେକ ଶୁଣି ଗଲେ ନିଜଭୃତ୍ୟ ଗଣ ।
ସହଜେ ସୁନ୍ଦର ଅଙ୍ଗ କରନ୍ତି ଭୂଷଣ । ୨୨ ।

ଶିରେ ଖାରପାଗ ନେଢ ପାଟଛୋଡ଼ା କାଛେଣି ।
ନାନା ଅଳଙ୍କାର ଅଙ୍ଗେ ମଣ୍ଡିଲେକ ଅଣି । ୨୩ ।

ରତ୍ନପୀଠ ଉପରେ ବଜୟେ କଲେ ବର ।
ଜନନୀଙ୍କୁ ବୋଇଲେ ମଙ୍ଗଳ ବିଧି କର । ୨୪ ।

ଦେବକୀ ବୋଲନ୍ତି ଯଶୋବନ୍ତୀ ମୁଖ ଚାହିଁ ।
ପୁତ୍ରଙ୍କୁ ତୁମ୍ଭର ଗୋ ମଙ୍ଗଳ କର ଯାଇଁ । ୨୫ ।

ଦେବଙ୍କ ବଚନ ଶୁଣି ବୋଲେ ନନ୍ଦରାଣୀ ।
ତ୍ରିଭୁବନେ ତୁମ୍ଭେ ଭାଗ୍ୟବନ୍ତୀ ଶିରୋମଣି । ୨୬ ।

୨୦-୧—ବସୁଦେବ ନନ୍ଦନ କୃଷ୍ଣଙ୍କୁ (ଜ) । ୨୦-୨—ବେଦ ଉପରେ (ଖ) ।
୨୩-୧—ପାଟଛେନ୍ଦ (ଜ) । ୨୩-୨—ଖଞ୍ଜିଲେ (ଗ) । ୨୪-୨—କହନ୍ତେ (ଜ)

ଏସନ ବୋଲଣ ସେ ଯେ ହେଲେ ଧରାଧର ।
ଦୁଇଜଣ ହୋଇଣ ମଙ୍ଗଳ ବଧି କର । ୨୭ ।

ଦୁର୍ବାକ୍ଷତ ଦେଇଣ ମଙ୍ଗଳ ହୁଳହୁଳ ।
ବନ୍ଦାପନା କଲେ ଦୀପ ବସାଇଣ ଅଳୀ । ୨୮ ।

ବାହାର କଲେକ ବର ବାଦ୍ୟ-ଗୀତ ଗାଇ ।
ଜନନୀ ସହିତେ ପଛେ ଅଛନ୍ତି ଗୋଡ଼ାଇ । ୨୯ ।

ଆଗେ ବାଜେ ମଙ୍ଗଳ ମହୁରୀ ଶଙ୍ଖସ୍ୱର ।
ବିଜେ କଲେ ଯାଇ ରତ୍ନବେଦୀର ଉପର । ୩୦ ।

ଉତ୍ତପ ଉଭୁଷି ହୋଇ ବସିଲେ ଭୀଷ୍ମକ ।
କୁଶହସ୍ତ ହୋଇ କଲେ ଦେଶକାଳ ବାକ୍ୟ । ୩୧ ।

ଆପଣେ ବରଣ ପୂଜା କଲେ ମହୀପାଳ
ଉଭା ହୋଇ ଗଳେ ଦେଲେ ବରଣର ମାଳ । ୩୨ ।

ବେଦବାକ୍ୟ ଉଚ୍ଚାରି ଗାନ୍ଧର୍ବ ମୁନି ଥାଇଁ
ବସ୍ତ୍ର ଅଳଙ୍କାର ଗନ୍ଧ ପୁଷ୍ପମାନ ଦେଇ । ୩୩ ।

ଶିରେଣ ମୁକୁଟ ଅସରଳା ମୃଡା ବନ୍ଧେ
ବରଣ ସାରଣ ମୃନ ଅନ୍ତପୁରେ ଯାଏ । ୩୪ ।

୨୭-୧—ଏସନେକ ବୋଲଣ ସେ ହାତ (ଖ) । ୩୦-୨—ଯାଇ ବର (ଙ) ।
୨୭-୨—ମଙ୍ଗଳ ବଧି (କ) । ୩୨-୨—ଭରେ ଦେନ (ଚ) ।
୩୩-୧—ଗାନ୍ଧ୍ରବ ଧୃତି (ଗ)।

୨୮ । ଦୁର୍ବାକ୍ଷତ—ଦୁବ ଓ ଅରୁଆ ଚାଉଳ । ଅଳୀ—ଧାଡ଼ି ।
୩୧ । ଉତ୍ତପ ଉଭୁଷ୍ପି ହୋଇ—ଲୁଗା ପିନ୍ଧି ଓ ଉତ୍ତରୀ ପକାଇ । ୩୨ ମହୀପାଳ—ରାଜା ଭୀଷ୍ମକ ।

ସଖୀ-ଜନ ରୁକ୍ମିଣୀଙ୍କୁ କରନ୍ତି ସୁବେଶ
ଜାଇ ଫୁଲ ଘେନଣ ସୁବେଶ କଲେ କେଶ । ୩୫ ।

କପାଳେ ତିଳକ କର୍ଣ୍ଣେ ଢାଳଙ୍କ ବିରାଜେ
ଗଜ ମୋତିହାର ଦେଇ ଝୀନ ପଟ୍ଟ ସାଜେ । ୩୬ ।

ରତ୍ନ ପୀଢ଼େ ବଜେ କଲେ ଭୀଷ୍ମକ-କୁମାରୀ
ବାନ୍ଧୁଡ଼ିଲେ ମୁନିବର ଗନ୍ଧବାସ ସାରି । ୩୭ ।

ଏମନ୍ତ ହୋଇଲା ଆସି ବେଳା ଅନୁକୂଳ
କନ୍ୟା ଆସିବାକୁ ଅନ୍ତଃପୁରେଣ ଚହଲ । ୩୮ ।

ଲବଣ ଅଞ୍ଜଳ କରେ ଦେଇଣ ସେ ନାରୀ
ଠେଙ୍ଗା ଘୋଡ଼ାଇଣ ସେ ଆଣିଲେ ପଉବାରୀ । ୩୯ ।

ଲବଣ ବିଞ୍ଚାଇ ଦେଲେ ବରର ଉପର
ବାନ୍ଧୁଡ଼ାଇ କନ୍ୟାକୁ ନେଲେକ ଅନ୍ତପୁର । ୪୦ ।

ଗାନ୍ଧବ ବୋଇଲେ ସେ ଆସନ୍ତୁ ବର ମାଏ ।
ଅଲତା ସିନ୍ଦୂର କରି ଯାଆନ୍ତୁ ଏଠାଏ । ୪୧ ।

ଯଶୋଦାକୁ ଡାକ୍ଇଁଣ ଦେବକୀ ହସ ହସ
ତୁମ୍ଭର ପୁତ୍ରକୁ କର ଅଲତା ସୁବେଶ । ୪୨ ।

ପୁତ୍ରକୁ କୋଡ଼ରେ ଧରି ନ ଜାଣିବି ମୁହିଁ
କେମନ୍ତ କରଣ ସ୍ତନ କ୍ଷୀରପାନ ଦେଇ । ୪୩ ।

୩୫-୨—ମଲ୍ଲୀ ଫୁଲ ଘେନଣ କବରୀ କଲେ ବେଶ (ଖ) । ୪୧-୧—ଅଳକ୍ତ ଦେଲେ (ଗ) ।

୩୬ । ଢାଳଙ୍କ—କର୍ଣ୍ଣଭୂଷଣ କାପ ପ୍ରଭୃତି ବା ଢାଡ଼ଙ୍କା । ଝୀନପଟ୍ଟ—ସରୁ ପାଟଲୁଗା ।
୩୯ । ଠେଙ୍ଗା—ପଉଡ଼ା ।

ଭୁଷିବା ହସିବା ଦୁଇ ଭାବ ମୁଁ ନ ଜାଣି
କେମନ୍ତେ ବୋଲିବ ମୋର ପୁତ୍ର ଚକ୍ରପାଣି । ୪୪ ।

ପୁତ୍ରଙ୍କ ଠାବରେ ଯେତେ ତୁମ୍ଭ ଭାବ ମତ
ସକଳହିଁ ଜାଣ ତୁମ୍ଭେ ଜଗତେ ବିଦିତ । ୪୫ ।

ଶୁଣିଣ ଯଶୋଦା ଦେବୀ ପ୍ରସରଇ ମନ
ସ୍ନେହଭରେ ଲୋତକ ବହଇ ଘନ ଘନ । ୪୬ ।

ବୋଲନ୍ତି ଯଶୋଦା ତୁମ୍ଭେ ଅଟ ଭାଗ୍ୟବନ୍ତ ।
ତୁମ୍ଭର ଉଦରୁ ଜାତ କଲ ଗୋ ଅନନ୍ତ । ୪୭ ।

ଏତେକ ବୋଲିଣ ଦୁଇ ଚରଣ ଧରିଣ
ଦୁଇ ମାଏ କଲେକ ଯେ ଅଳତା ଭୂଷଣ । ୪୮ ।

ଦୁଇ ଚକ୍ଷୁ ଅଞ୍ଜନ ଦେଲେକ ଦୁଇଜଣ
ଦେଖି ଧନ୍ୟ ଧନ୍ୟ କଲେ ସୁର ମୁନିଗଣ । ୪୯ ।

କପାଳେ ସିନ୍ଦୂର ଦେଇଗଲେ ଦୁଇ ଆଯୀ
କନ୍ୟାଙ୍କୁ ଆଣିଲେ ପୁଣି ଅନ୍ତଃପୁରୁ ଯାଇ । ୫୦ ।

ବଜେ କରାଇଲେ ରତ୍ନ ବେଦୀର ଉପର
ଶ୍ରୀକୃଷ୍ଣର କରେ ଦେଇ ରୁକ୍ମଣୀର କର । ୫୧ ।

କୁଶଚକ୍ର ଦେଇଣ ବାନ୍ଧିଲେ ମହର୍ଷି
ବ୍ରାହ୍ମଣ ମିଳିଣ ତହିଁ ବେଦବାକ୍ୟ ଘୋଷି । ୫୨ ।

୪୬-୨—ଲେଢେକ ପଢ଼ଇ (ଖ) । ୪୯-୧—ଦୁଇ ଅକ୍ଷି (କ) ବେନ୍ନଜଣ (ଖ) ।
୫୦-୧—କପାଳେ ମଳକ (କ) ।

---

୪୬ । ପ୍ରସରଇ—ଫୁଲି ଉଠେ (ଆନନ୍ଦରେ), । ୪୭ । ଉଦରୁ—ପେଟରୁ ।
୪୯ । ଅଞ୍ଜନ—କଜଳ ।

ସ୍ୱର୍ଗେ ସୁରଗଣ ଦେଖି କଲେ ଜୟେ ଜୟେ
ପୁଷ୍ପ ବୃଷ୍ଟି କରଣ ସେ ଦୁନ୍ଦୁଭ ବଜାଏ । ୫୩ ।

ଏସନେ ପାଣି-ଗ୍ରହଣ ତୀର୍ଥ-ଜଳେ ଦାନ—
ଯଜ୍ଞଭୁକ ଦେଲା ତହିଁ ଭୀଷ୍ମକ ରାଜନ । ୫୪ । .

ଅହବ୍ରତେ ଗୁଞ୍ଜର ଦ୍ୱିଗୁଣ ଦେଲା ଅଶ୍ୱ
ହେମମୟେ ରଥ ଦେଲା ପଞ୍ଚାଶ ସହସ୍ର । ୫୫ ।

ବିମଳା ସଙ୍ଗତେ ଦେଲା ସହସ୍ରେକ ଦାସୀ
ଅନେକ ଦେଇଣ ରାଜା ହୋଇଲା ନବେଶି । ୫୬ ।

କୁମାରୀ ଗୋଟିଏ ଅସି କୁଶଗଣ୍ଠି ଫେଇ
ଅଗ୍ନି-ହୋମ ଦେଇ ବିଭା ବିଧାନ ବଢ଼ାଇ । ୫୭ ।

ସମୁଦ୍ର ମନ୍ଥିଲେ ଯେହ୍ନେ ହରି ଲକ୍ଷ୍ମୀ ପାଇ ।
ତେସନେକ ରୁକ୍ମଣୀଙ୍କୁ ହୃଦରେ ଲଗାଇ । ୫୮ ।

ବନ୍ଦାପନା କରି ବରକନ୍ୟା ଘେନିଗଲେ ।
ଉଗ୍ରସେନ ରାଜା ଗନ୍ଧ ଚନ୍ଦନ ବୋଳିଲେ । ୫୯ ।

ଗୋଳିଲେ ସହସ୍ରେ ରତ୍ନ ଭାଣ୍ଡମାନଙ୍କେଣି
ଖ୍ୱିଜାମାନଙ୍କର ଅଙ୍ଗେ ବୋଳିଲେ ଆପଣି । ୬୦ ।

୫୪-୧—ତୀର୍ଥ ଫଳ ଦାନ (କ) । ୫୫-୧—ଅଦ୍ଭୂତେ ଗୁଞ୍ଜର ଦେଲା ଫଟ୍ଟୁ (ଖ) ।
୫୬-୧—ରୁକ୍ମଣୀ ସଙ୍ଗତେ ଦେଲା ଅନେକ ସେ (ଖ) । ୫୭-୧—ଗଣ୍ଠି ଫେଡ଼ିଣ୍ଡେଇ ।

୫୫ । ଅହବ୍ରତେ ଗୁଞ୍ଜର—ଅଦ୍ଭୂତେ ହାତୀ । ହେମମୟ—ସୁନାରେ ତିଆରି ।
୫୬ । ହୋଇଲା ନବେଶି—ସ୍ଥିର ହେଲା ।

ବସୁଦେବ ଶ୍ରୀକୃଷ୍ଣଙ୍କ କୁଙ୍କୁମ ବୋଳା ବୋଳ
ସ୍ୱର୍ଗେ ଅପସରୀ ଥାଇ ଦ୍ୟନ୍ତି ହୁଳହୁଳି । ୬୧ ।

ପାରିଜାତ ପୁଷ୍ପ ବରଷିଲେ ନିରନ୍ତର
ବରକନ୍ୟାଙ୍କୁ ଘେନିଣ ଗଲେ ନିଜପୁର । ୬୨ ।

ଅନେକ ଯୁବତୀ ମିଳି ବନ୍ଦାପନା କଲେ ।
ପହଣ୍ଡ ମଣାଇ ଦାସୀ ଭିତରକୁ ନେଲେ । ୬୩ ।

ଏକ ରତ୍ନ ପୀଢ଼ରେ ସେ ବର କନ୍ୟା ବସି
ଷଡ଼୍‌ରସେ କରାଇଲେ ପଞ୍ଚୁ ଯେ ଗରାସି । ୬୪ ।

ଆଚମନ ଗନ୍ଧ ଜଳେ ସୁବର୍ଣ୍ଣ-ପାତ୍ରେଣ
କର୍ପୂର ତାମ୍ବୂଳ ଆଣି ଭୁଞ୍ଜାଇଲେ ପୁଣ । ୬୫ ।

ପ୍ରିୟସଖୀ ବିମଳା ଶ୍ରୀକୃଷ୍ଣ-ବାଳୀ ସଙ୍ଗେ
ଶ୍ରୀକୃଷ୍ଣଙ୍କୁ ନେଇ ପଶା ଖେଳାଇଲେ ରଙ୍ଗେ । ୬୬ ।

ଏମନ୍ତ ପ୍ରକାରେ ଅସ୍ତ ଗଲେ ଦିନକର
ପ୍ରବେଶ ହୋଇଲା ଆସି ରଜନୀ-ତିମିର । ୬୭ ।

କଥା କହୁଁ କହୁଁ ଗଲା ନିଶି ଏକ ଯାମ ।
କରନ୍ତି କାମିନୀ ମହୁଶଯ୍ୟାର ବିଧାନ । ୬୮ ।

ରତ୍ନମଞ୍ଚ ମଧ୍ୟରେ କୁସୁମ ଚନ୍ଦ୍ରାତପ ।
କୁସୁମର ଝୁଡ଼ା ଝୁମ୍ପା ଲମ୍ବାଇ ବହୁତ । ୬୯ ।

୬୭-୧—ଏମନ୍ତ ସମୟେ (ଗ) । ୬୮-୨—ମଧୁଶଯ୍ୟା (ଖ) ।
୬୯-୨—ଲମ୍ବେ ଚଉପାଶ (ଢ) ।

୬୭ । ଦିନକର—ସୂର୍ଯ୍ୟ । ରଜନୀ ତିମିର—ରାତିର ଅନ୍ଧାର । ୬୮ । ଯାମ—ପ୍ରହର ।

ରତ୍ନଖଟ ଉପରେ ସୁପାତ ଭୁଲୀ ଫାଡ଼ ।
ତଥିର ଉପରେ ଚାନ୍ଦ-ସେବତୀ-ପାଖୁଡ଼ା । ୭୦ ।

କର୍ପୂର ଉଛିଣ କ୍ଷୀନ ବସନ ଶେଯାଇ ।
ମୃଦୁଲ ମୁଚୁକ ଭୂଜ ପାଦତଳେ ଦେଇ । ୭୧ ।

ତଥିର ଉପରେ ବଜେ କଲେ ଯଦୁସାଇଁ ।
ରୁକ୍ମିଣୀଙ୍କି ସଜ କଲେ ସଖୀମାନେ ଯାଇଁ । ୭୨ ।

କି ଜାଣି ମଦନ ସୈନ୍ୟେ କଲେ ଦଗବଜେ ।
ଶମ୍ଭୁକୁ ଜିଣିବା ପାଇଁ ସମଦଣ୍ଡ ସାଜେ । ୭୩ ।

ରଚିଲେକ ମଉଳ-କୁନ୍ତଳ-କେଶବେଣୀ ।
କାମ-ରଥବରେ ନୀଳ ପତାକା କି ଜାଣି । ୭୪ ।

କପାଳେ ଲିହିଲେ ଟୀକା ମୃଗମଦ କଳା ।
ମନସିଜ-ସୈନ୍ୟେର କି ଥୋଇଅଛୁ ଫଳା । ୭୫ ।

ଭୂଲତା ଯୁଗଳ କି ସେ ସାଜନ୍ତି କମାଣ ।
ନୟନ ସାୟକ କି ଅଞ୍ଜନ ଗୁଣଟାଣ । ୭୬ ।

୭୩-୨—ଅଷ୍ଟ କଟକା । ୭୪-୧—କୁନ୍ତବେଣୀ (ଗ) । ୭୫-୧—ଲିହିଲେ ଚନ୍ଦା (ଗ)
୭୫-୨—ମନମଥ (ଖ) । ୭୬-୨—ମଦନ ଜୀବନ ସୁଧାରସ ବନ୍ଧୁ ମାନେ (କ) ।

---

୭୦ । ସୁପାତ—ଭଲ ଶେଯ । ୬୮ । ଚନ୍ଦ୍ରାତପ—ଚାନ୍ଦୁଆ ।
୭୧ । ଉଛିଣ—ଚିହ୍ନ । ମୃଦୁଲ—କୋମଳ । ୭୩ । ଶମ୍ଭୁକୁ—ମହାଦେବଙ୍କୁ । ସମଦଣ୍ଡ—ସୈନ୍ୟ ସାମନ୍ତ । ୭୪ । ମଉଳ—ମଣ୍ଡଳେ । କୁନ୍ତଳ—କୁଞ୍ଚିତ କେଶ । ରଥବର—ରଥ । ୭୫ । ମନସିଜ—କନ୍ଦର୍ପ । ଫଳା—ଅସ୍ତ୍ର ବିଶେଷ । ୭୬ । ସାୟକ—ବାଣ ।

ମାଣିକ୍ୟ-ନାସୃକ କାପ ଶ୍ରବଣେ ଭୂଷଣ ।
କି ଜାଣି ମଦନସ୍ୱପ୍ନେ ଶର ତୀକ୍ଷବାଣ । ୭୭ ।

ନାସିକା ଉପରେ ନବ ମୋତିବର ବସେ ।
ମଦନ-ମୋହନ-ସରସୁଧାବିନ୍ଦୁ କି ସେ । ୭୮ ।

ରଚନ୍ତି ତାମ୍ବୁଲ ରଙ୍ଗେ ବନ୍ଧୁଳୀ ଅଧର ।
ମନସିଜ-ମହୀପତି ନେତ୍ରର ଉଜ୍ଜଳ । ୭୯ ।

ହାରାବଳୀ କୁଚର ଉପରେ ଶୋଭାପାଏ ।
ହେମଘଟେ ଲମ୍ବଇ କି କୁସୁମ ମାଳ ଏ । ୮୦ ।

ଚରଣେ ନୂପୁର ବେନି, ରସନା ବିରାଜେ ।
ମଦନ ରାଜ୍ୟେର କି ଏ ପଦ୍ମପଟ୍ଟ ସାଜେ । ୮୧ ।

ସୁବେଶ କରଣ ପରିହାସ କଲେ ବାଳୀ ।
ଆଜ ସେ ହୋଇବ ଗୋ ମଦନରସ-କେଳି । ୮୨ ।

ପହଣ୍ଡ ମଞ୍ଜାଇ ସେ ବିମଳା ଘେନିଯାଇ ।
ପଲ୍ୟଙ୍କ ଉପରେ ନେଇ ପ୍ରବେଶ କରାଇ । ୮୩ ।

୭୮-୧—ନୂପୁରମଣି (ଗ) । ୭୯-୨—ମଦନ ସ୍ୱପ୍ନେ (ଙ) । ୮୧-୨—ପାଟରେଣ (କ) ।
୮୩-୧—ନିଭୃତ ବହିର (କ) ।

---

୭୭ । ମାଣିକ୍ୟ ନାସୃକ କାପ—ଭଲ ମାଣିକ୍ୟରେ ତିଆରି ହୋଇଥିବା କାପ ।
୭୮ । ମଦନ—କନ୍ଦର୍ପ । ମୋହନ-ସର—ମୋହ ପକାଇବା ରୂପକ ପୋଖରୀ । ସୁଧାବିନ୍ଦୁ
—ଅମୃତ କଣିକା ବା ଜଳକଣା ।
୭୯ । ମନସିଜ ମହୀପତି—କାମରାଜା । ନେତ୍ରର ଉଜ୍ଜଳ—ଚକ୍ଷୁର ପ୍ରକାଶକାରୀ ।
୮୦ । ହେମ ଘଟେ—ସୁନା କଳସୀରେ । ୮୧ । ରସନା—ଅଣ୍ଟାସୂତା । ପଦ୍ମପଟ୍ଟ—
ଜାତିଏ ବାଜା । ୮୪ । ଝିଞ୍ଚ—ପରଦା ।

ପରହାସ କଥା ହୁଇ କହୁଣ ସୁକେଶୀ
ବାହାର ହୋଇଣ ଠେରା ଉହାଡ଼େଣ ବସି । ୮୪ ।

ପଲଙ୍କୁ ଓହ୍ଲାଇ ସେ ଆପଣେ ଯଦୁସାଇଁ
ରୁକ୍ମିଣୀକି ନିଜ ଜାନୁ ଉପରେ ବସାଇ । ୮୫ ।

ଲକ୍ଷ୍ମୀନାରାୟଣ ବିଭା ବେଭାର ବିନୋଦ
ମନେ ଚିନ୍ତାକର ନରେ ଭବ ଦୁଃଖ ଛେଦ । ୮୬ ।

ରୁକ୍ମିଣୀ ବିଭା ଯେହୁ ଶୁଣଇ ଏକଚିତ୍ତେ
ପରମ ମଙ୍ଗଳ ତାର ହୋଇଥାଇ ନିତ୍ୟେ । ୮୭ ।

ଜଗନ୍ନାଥ-ଚରଣ-କମଳେ ଦେଇ ଶିର
ଗାଇନ୍ତି କାର୍ତ୍ତିକ ଦୀନ ପଣ୍ଡିତ ପାମର । ୮୮ ।

# ଦଶମ ଛାନ୍ଦ

## ଚକ୍ରକେଳି ବାଣୀ

ଏଥୁ ଅନନ୍ତରେ ଜଣି ଗଲା ପାହ୍ର
ନିର୍ଦ୍ଧ୍ୟକର୍ମ୍ମ ସାରଣ ଯଦୁସାଇଁ । ୧ ।

ଯାଇଁ ବଜପ୍ରେ ରହ ସିଂହାସନ
ଶୁଭେ ବସିଲା ବଭ୍ର ସାଚ୍ଛଦନ । ୨ ।

ଦର୍ଶନ କଲେ ଯାଇଁ ରାଜାଗଣ
ଦେବା ମେଲାଣି ପ୍ରଭୁ ନାରାୟଣ । ୩ ।

ତୁମ୍ଭ ଚରଣ-ରେଣୁ ପ୍ରସାଦେଣ
ସ୍ୱର୍ଗ ଭୋଗକରି ଅପ୍ରମାଦେଣ । ୪ ।

ଆଜ୍ଞା ଦେଲେଣ ଯିବୁ ନିଜ ପୁର
ଜନ୍ମେ ଜନ୍ମେ ହୋଇଥିବୁ କୋପୃର । ୫ ।

ଶୁଣି ବୋଲନ୍ତି ପ୍ରଭୁ ଭଗବାନ
ଯାଉଁ ଦର୍ଶନ କଲେ ଉଗ୍ରସେନ । ୬ ।

ରାଜା ଆଜ୍ଞା ପ୍ରମାଣେ ସେ ମେଲାଣି
କରିଦେବା ବୋଇଲେ ଚକ୍ରପାଣି । ୭ ।

ଉଗ୍ରସେନଙ୍କୁ ଭେଟ କରାଇଣ
ଦେଲେ ମେଲାଣି କରି ରାଜାଗଣ । ୮ ।

୨-୧—ଦିବ୍ୟସିଂହାସନ (ଖ) । ୫-୨—କିଙ୍କର (ଗ) । ୭ ୧—ପାଉଣ (ଖ) ।

---

୫ । କୋପୃର—ଦାସ, କିଙ୍କର ।

ଗଜ ଅଇରାବତ କୁଳେ ଜାତ
ଗିରି ସମାନେ ଦେହ, ସଦା ମତ୍ତ । ୯ ।

ରତ୍ନ ବଳୟ ଶୋଭେ ଶୃଙ୍ଗିଦନ୍ତ
ତହୁଁ ଦେଲେକ ଆଣି ଅପ୍ରମିତ । ୧୦ ।

ଶ୍ୟାମବର୍ଣ୍ଣ ଚନ୍ଦ୍ରଜାତ ଯେ ଅଶ୍ୱ
ତହୁଁ ଦେଲେକ ଆଣି ଲକ୍ଷ ଦଶ । ୧୧ ।

ଇନ୍ଦ୍ରଭୁବନୁ ଅମଳାଣ ବସ୍ତ୍ର
ଜଣେ ଜଣେ ଦେଲେ ମୂର୍ତ୍ତି ସହସ୍ର । ୧୨ ।

ସୂର୍ଯ୍ୟ ସ୍ୱରୂପ ଚନ୍ଦ୍ରରାଗ ମଣି
ଦେଲେ ଜଣ ଜଣକେ ଦଶ ଆଣି । ୧୩ ।

ଆଉ ରତ୍ନ ବଇଦୁର୍ଯ୍ୟ ମାଣିକ୍ୟ
ହୀରା ନୀଳା ମୁକୁତା ପ୍ରବାଳେକ । ୧୪ ।

କୁଢ଼ କୁଢ଼ କରିଣ କୁଢ଼ାଇଲେ
ଯେତେ ପାର ବହ ନଅ ବୋଇଲେ । ୧୫ ।

ନୃପମାନେ ଅଛନ୍ତି ଉଭା ହୋଇ
ମନେ ଯାହା ଇଚ୍ଛାକରି ତା ପାଇ । ୧୬ ।

ସବୁ ଛତର ଲୋକେ ବୋଝଭାର
ରତ୍ନମାନେ ଘେନି ଦେଲେ ବାହାର । ୧୭ ।

୧୦-୨—ଲକ୍ଷଦଶ (ଖ) ।

---

୧୨ । ଅମଳାଣ ବସ୍ତ୍ର—ପାଠ ମଠା ଅବ ଯେଉଁ ଲୁଗାରେ ସ୍ପର୍ଶ ଦୋଷ ଅର୍ଥାତ୍ ଛୁଆଁଛୁଇଁ ବାରଣ ନାହିଁ ।

ରାଜାମାନଙ୍କ କଣ୍ଠେ ପାରିଜାତ
ମାଳା ଦ୍ରବ୍ୟ ଚନ୍ଦନ ଲେପି ଗାତ୍ର । ୧୮ ।

ଉଗ୍ରସେନ ରାଜେନ୍ଦ୍ର ଦ୍ୟନ୍ତ ମେଲାଣି
ଯାଇ ଗଲେ ସମସ୍ତ ନୃପମଣି । ୧୯ ।

ପନ୍ଥ ଚାଲନ୍ତି ଏକ ଅରକ୍ଷେଣ
କହୁ ଅଛନ୍ତି କୃଷ୍ଣ ଯଶଗୁଣ । ୨୦ ।

ଯାଇ ଯେ ଯାହା ରାଜ୍ୟରେ ହୋଇଲେ
ଦ୍ୱାରାବତୀ-ପୁର କଥା କହିଲେ । ୨୧ ।

ଏହି ପ୍ରକାର ଉତ୍ତମାନ ଦେଇ
ଦେଲେ ମେଲାଣି କରି କୁଣ୍ଡିସାଇଁ । ୨୨ ।

ରାଜା ଅନ୍ତପୁରେଣ ଯାଇଁ ପଶି
କୋଡେ ଧଇଲେ ଆଣି ଶୁଭ୍ରକେଶୀ । ୨୩ ।

ଶାଶୁମାନଙ୍କ ପାଦତଳେ ପକାଇ
ରାଜା କହିଲେ ଅନେକ ବିନୋଇ । ୨୪ ।

ତୁମ୍ଭ ସଙ୍ଗତେ ବନ୍ଧୁକଲୁ ପଣ
ହୋଇ ପାରିବେ ଅବା ପୁରସ୍ରଣ । ୨୫ ।

ଆମ୍ଭେ ମଣ୍ଡପୁର ରାଜା ଇତର
ସରି ନୋହୁ ତୁମ୍ଭ ଉଚ୍ଚ୍ୟ ଉଚ୍ଚ୍ୟର । ୨୬ ।

୨୧-୧—ପୁରରେ (ଖ) । ୨୧-୨—ପୁର ଭେଗ (ଗ) । ୨୩-୨—ଧଇଲେ ଯାଇ (ଖ) ।
୨୪-୧—ପାଦେ ପକାଇଣ (ଖ) । ୨୪-୨—କାର୍ତଣ୍ୟ (ଗ) ।
୨୬-୨—ସରି ହୋଇବୁ କି ତୁମ୍ଭ ସଙ୍ଗର (ଖ) ।

୧୮ । ଗାତ୍ର—ଦେହ । ୨୦ । ଧ୍ରରବଣ—ଛନ୍ଦ୍ର ।

ତୁମ୍ଭ ଦାସୀମାନଙ୍କ ସଙ୍ଗେ ଗଣି
ଜଣେ କରିଥିବ ମୋର ରୁକ୍ମିଣୀ । ୨୭ ।

କହୁଁ କହୁଁଣ ବହେ ଅଶ୍ରୁଜଳ
ଛଡ଼ ଯିବାକୁ ହୃଦୟ ଆକୁଳ । ୨୮ ।

ଶୁଣି ବୋଲନ୍ତି ଦେବକୀ ଉତ୍ତର
କପାଁ ଏମନ୍ତ ବୋଲ ନୃପବର । ୨୯ ।

ଆମ୍ଭ ଦ୍ୱାରକାପୁରେ କମଳଣୀ
ବୋଲି ଜାଣିଥିବ ଏହୁ ରୁକ୍ମଣୀ । ୩୦ ।

ମୋର ପ୍ରାଣୁ ଅଧିକ ଚକ୍ରଧର
ତାହୁଁ ଅଧିକ ପ୍ରିୟ ସେ ମୋହର । ୩୧ ।

ବସୁଦେବ କହିଲେ ଏହିମନ୍ତ
ବୋଧ ପାଇଣ ଗଲେ ସେ ନୃପତି । ୩୨ ।

ସବୁ ଲୋକେ ମେଲାଣି ପାଇ ଗଲେ
ହଳା କେତେ ନନ୍ଦଙ୍କୁ ରୁହାଇଲେ । ୩୩ ।

ପ୍ରତିକ୍ଷଣେ ଯଶୋଦା ସଙ୍ଗେ ହରି
ପୁତ୍ରଭାବ ବିନୋଦମାନ କରି । ୩୪ ।

କ୍ଷୁଧା ଲାଗିଲେ ମାଗନ୍ତି ଭୋଜନ
ତୃଷା ଲାଗିଲେ ମାଗେ ଜଳପାନ । ୩୫ ।

ନିଦ୍ରା ଲାଗିଲେ କରନ୍ତି ଶୟନ
ବୃନ୍ଦାବନ କଥା ଥାନ୍ତି କହୁଣ । ୩୬ ।

୨୭-୧—ମାଢ଼ଲେ ପଲଙ୍କେ (ଖ) ।

ଦାମ ସୁଦାମ ପ୍ରିୟସଖା ସଙ୍ଗେ
ପୂର୍ବ ପ୍ରାୟେକ ହୋଇ ଖେଳ଼ରଙ୍ଗେ । ୩୭ ।

ଗୋପୀ ବିରହ-ଦୁଃଖ ପାସୋରିଲେ
ଗର୍ଜି ଶବ୍ଦେ ଗୁଣେ ସୁଖ ମଣିଲେ । ୩୮ ।

ହେନ ପ୍ରକାରେ ଗଲା କେତେ ଦିନ
ଦେଖି ବିଚାର କଲେ ଭଗବାନ । ୩୯ ।

ମାୟା କଲେ ଗୋପାଳ ଗୋପୀ ଚିତ୍ତେ
ଆସି ରୁଣ୍ଡ ହୋଇଲେ ସେ ସମସ୍ତେ । ୪୦ ।

ବସି ଭାଳନ୍ତି ସର୍ବ ଗୋପୀଜନ
କିସ କରୁଥିବେ ଆମ୍ଭ ଗୋଧନ । ୪୧ ।

ହେନ ସମୟ ଜାଣି ଭାବଗ୍ରାହୀ
ନନ୍ଦଠାବେ ପ୍ରବେଶ ହେଲେ ଯାଇଁ । ୪୨ ।

ପାଦେ ପ୍ରଣାମ କରି ଭଗବାନ
ଉଭା ହୋଇ ପଚାରନ୍ତି ବଚନ । ୪୩ ।

ମନ ଚଞ୍ଚଳ ପ୍ରାୟେକ ଦିଶଇ
ଦୁଃଖ ପାଉଥିବେକ ତହିଁ ଗାଈ । ୪୪ ।

ନନ୍ଦ ଯଶୋଦା ହୋଇଲେ ମଉନ
ପୀଡ଼ାକାର କରଣ ହେଲେ ଭୁନ । ୪୫ ।

୩୮-୨ ପୂର୍ବ ସ୍ମୃତ ଶବ୍ଦେ ଗୁଣ ଲଭିଲେ (ଖ) । ୪୩-୧—ପ୍ରଲମ୍ବ (ଗ) । ୪୫-୨—ହେଲେ ଛନ (ଟ)

ବସୁଦେବଙ୍କ ଅଗେଣ ଗୋବିନ୍ଦ
ଯାଇଁ କହିଲେ ଅଜ ଯିବେ ନନ୍ଦ । ୪୬ ।

ଶୁଣି ବାହାର ହେଲେ ବାସୁଦେବ
ରାମ ମାଧବ ଦେବକୀ ଉଦ୍ଧବ । ୪୭ ।

ଆସି ଦେଖିଲେ ନନ୍ଦ ଗୋପଗଣ
ଉଭା ଶକଟ ଭାର ସଜାଡ଼ଣ । ୪୮ ।

ଶୁଣି ହୋଇଲେ ଆସି ଉଗ୍ରସେନ
ଆଣି ଦେଲେ କେତେକ ବସ୍ତ୍ର ଧନ । ୪୯ ।

ଅନ୍ତପୁରୁ ଆଇଲେ ନାରୀଗଣ
ଓଲଗିଲେ ଯଶୋବନ୍ତୀ ଚରଣ । ୫୦ ।

ଦ୍ରବ୍ୟ ସୁବର୍ଣ୍ଣ-ରଥମାନ ଦେଇ
ଗୋପୀ ଗୋପାଳମାନଙ୍କୁ ବସାଇ । ୫୧ ।

ସାଙ୍ଗେ ବାହାର ହୋଇଲେ ବସୁଦେବ
ଉଗ୍ରସେନ ରଜା ଯେତେ ଯାଦବ । ୫୨ ।

ଦେଖି ଦେବକୀ ରାମକୃଷ୍ଣ ଦୁଇ
ନନ୍ଦ ସଙ୍ଗତେ ପାଞ୍ଚେନ୍ତ ଗୋଡ଼ାଇ । ୫୩ ।

ଗଲେ ଅନେକ ଦୂର ପଥ ବହି
ରହି ରହି ହୋଇଲେ ବ୍ରଜସାଇଁ । ୫୪ ।

୪୮-୨—ଉଟ ଶକଟ ରଥ ସଜାଇଣ (ଢ)। ୪୯-୧—ପୁଣି ଅଇଲେ ରଜା (ଢ)।

୫୪। ବିଜୟାଇଁ—ନନ୍ଦ।

ନନ୍ଦ ଉତୁରଲେ ସେ ରଥ୍ବର
ବସୁଦେବ ଧଇଲେ ଯାଇଁ କର । ୫୫ ।

ରାମକୃଷ୍ଣ ଜନନୀ ପାଦତଳ
ପଡ଼ି ନୟନ୍ ବନ୍ଧେ ଅଶ୍ରୁଜଳ । ୫୬ ।

ସ୍ନେହେ ବିକଳ ହୋଇଣ ଜନନୀ
ଢୋଳ କୋଳେ ଧଇଲେ ପୁତ୍ର ବେନ । ୫୭ ।

ଥାଇଁ ଆକାଶେ ଦେବ-ବୃନ୍ଦ ଗୃହେଁ
ଦେଖି ହୋଇଲେ ପରମ ବିସ୍ମୟେ । ୫୮ ।

ଧ୍ୟାନେ ନ ଜାଣେ ବ୍ରହ୍ମା ତ୍ରିଲୋଚନ
ଦେଖ ଭକ୍ତବଶ ଭଗବାନ । ୫୯ ।

ଚୁମ୍ବ ଦେଇଣ ବଦନ ନିରେଖି
ଚିତ୍ରପିତୁଳ ପ୍ରାୟେ ହୋଇ ଆଖି । ୬୦ ।

ଛୁଟୁଅଛି ସ୍ତନରୁ ଖୀରଧାର
ଧନ୍ୟ ଧନ୍ୟ କରନ୍ତି ସ୍ୱର୍ଗେ ସୁର । ୬୧ ।

ହରି ବୋଲନ୍ତି ଶୁଣ ଗୋ ଜନନି !
ଆମ୍ଭ ସବୁ ସମ୍ପଦ ତୁମ୍ଭ ପେନ । ୬୨ ।

ଛାଡ଼ି ଯିବାକୁ ହୋଉ ନାହିଁ ମନ
ଏହି ନିକଟେ ଯିବୁ ବୃନ୍ଦାବନ । ୬୩ ।

୫୬-୧ – ପଡ଼ିଲେ (ଖ) । ୫୬-୨ – ଗଡ଼ି ନୟନ୍ (ଖ) ।

---

୫୫ । ରଥ୍ବର—ରଥ । ୫୯ । ତ୍ରିଲୋଚନ—ମହାଦେବ ।

ତହିଁ କି କରୁଛନ୍ତି ବତ୍ସମାନେ
ସର୍ବ ଦେଖି ଅସିବୁ ବୁଲି ବନେ । ୬୪ ।

ହୋଉଁ ବୋଇଲେ ଜନନୀ ହରଷେ
ଯାଇ ବାହୁଡ଼ି ଚହିବ ବରଷେ । ୬୫ ।

ସଖାମାନଙ୍କୁ ଦେଇ ଆଲିଙ୍ଗନ
ଗୋପୀମାନଙ୍କୁ ବୋଇଲେ ବଚନ । ୬୬ ।

ଏହି ନନ୍ଦକଟେ ତୁମ୍ଭ ଆମ୍ଭ ଭେଟ
ଯାଇ ହୋଇବୁ ଯମୁନାର ତଟ । ୬୭ ।

ଏତେ କହି ରହିଲେ ବନମାଳୀ
ନନ୍ଦ ଯଶୋଦା ଗଲେ ଗୋପେ ଚଳି । ୬୮ ।

ପନ୍ତେ ପରମ ଆନନ୍ଦ ଭଞ୍ଜିଲେ
ବଇକୁଣ୍ଠ-ପୁର-ସୁଖେ ମଜ୍ଜିଲେ । ୬୯ ।

ଯାଉଁ ଯାଉଁ ହରି ଗୁଣ ଗାଆନ୍ତି
ହରି ଦେଖନ୍ତି ଯେଣିକ ଗୃହାନ୍ତି । ୭୦

ଯାଇଁ ପ୍ରବେଶ ହୋଇଲେ ଗୋକୁଳ
ହରି ଗୁଣ ଗାଇଣ ନେଲେ କାଳ । ୭୧

ହରି କଥା ଶ୍ରବଣେ କଲେ ପାନ
ଇଚ୍ଛା ନାହିଁ ବଇକୁଣ୍ଠ ଭୁବନ । ୭୨ ।

୬୪-୧ — ହ୍ୱପ ହୋଇଲେ (ଖ) ।
୬। -୨—ଗୋପୀ ଗଲେ (ଖ) ।

ଗୋପୀ ଯହିଁ ଥାଆନ୍ତି ତହିଁ ହରି
ଗୋପୀ ରହିଲେ ତହିଁ ଭାବ କରି । ୭୩ ।

ଉଗ୍ରସେନ ବସୁଦେବ ଶ୍ରୀଧର
ଯାଇଁ ହୋଇଲେ ଦ୍ୱାରିବତୀ ପୁର । ୭୪ ।

ନିତ୍ୟବୈକୁଣ୍ଠ ସେହୁ ଦ୍ୱାରିବତି
ତହିଁ ରସି ରହିଲେ ଶିରୀପତି । ୭୫ ।

ଦେଖି ରୁକ୍ମିଣୀ ସଙ୍ଗେ ରଙ୍ଗ ରସ
ମନ ହରନ୍ତି ପ୍ରଭୁ ପୀତବାସ । ୭୬

ଲକ୍ଷ୍ମୀନାରାୟଣ କେଳି-ବିନୋଦ
ନରେ ଶ୍ରବଣେ ଶୁଣି ଦୁଃଖ ଛେଦ । ୭୭ ।

ହରି-ରୁକ୍ମିଣୀ-ବିଭା-ରସ କଥା
କର୍ଣ୍ଣେ ଶୁଣିଲେ ଯାଏ ଭବ-ବ୍ୟଥା । ୭୮ ।

ପଦ୍ମପୁରାଣ କଥା ଏହିମତ
ଶୁଣି ଛାଡ଼ ହୋ ଅଶେଷ ଦୁରିତ । ୭୯ ।

ଶ୍ରଦ୍ଧାବନ୍ତ ହୋଇଣ ଯେ ଶୁଣଇ
ନିତ୍ୟ-ବୈକୁଣ୍ଠ-ପୁରେ ଥାନ ପାଇ । ୮୦ ।

ଜଗନ୍ନାଥ ଚରଣ-ରେଣୁ ଶିର
ଧରି ଗାଇଲେ କାର୍ତ୍ତିକ ପାମର । ୮୧ ।

୭୮ — ହର ଭବ (ଗ) । ୮୦-୧ .. ଶୁଣନ୍ତି (ଗ)। ୮୦-୨ — ବୈକୁଣ୍ଠରେ ଥାନ ପାବନ୍ତି (ଗ)।

୮୧ । ଚରଣରେଣୁ—ଗୋଡ଼ ଧୂଳି ।

